# ଜୀବନ ସଙ୍ଗିନୀ

ରଚନା :

ଶ୍ରୀ ଧନେଶ୍ୱର ସାହୁ

ପ୍ରକାଶକ ଓ ପ୍ରାପ୍ତିସ୍ଥାନ

ଶ୍ରୀ ଶାରଦା ଷ୍ଟୋର

ଷ୍ଟେସନ ବଜାର କଟକ-୩

Digitized by srujanika@gmail.com

ରଚନା :

**ଶ୍ରୀ ଧନେଶ୍ୱର ସାହୁ**

ପ୍ରକାଶକ :

**ଶ୍ରୀ ଶାରଦା ଷ୍ଟୋର**

ଷ୍ଟେସନ ବଜାର, କଟକ-୩

ନୂତନ ମୁଦ୍ରଣ

ପ୍ରାପ୍ତିସ୍ଥାନ :

**ଶ୍ରୀ ଶାରଦା ଷ୍ଟୋର**

ଷ୍ଟେସନ ବଜାର, କଟକ-୩

ମୂଲ୍ୟ—**ତିନିଟଙ୍କା ମାତ୍ର**

Digitized by srujanika@gmail.com

ରତିକାନ୍ତ ପିତାଙ୍କ ସଞ୍ଚିତ ଜମିଦାରୀ ଦେଖିବାକୁ ଯାଇଥିଲା । ଦିନେ ସେ ଘୋଡ଼ାରେ ଚଢ଼ି ଗ୍ରାମ ପରିଦର୍ଶନ କରୁ କରୁ ଗୋଟିଏ ବଡ଼ ପୁଷ୍କରିଣୀ ପାଖରେ ଆସି ପହଞ୍ଚିଲା । ଖରା ଶୋଷ ହେଉଥାଏ । ଗ୍ରାମ ପାଖରୁ ଅନେକ ଦୂର ଚାଲି ଆସିଲାଣି । ନିକଟରେ କେବଳ କେତେ ଖଣ୍ଡି କୁଡ଼ିଆ ଦେଖାଯାଉଛି । ସେଠାକୁ ଯାଇ ପାଣି ମାଗିବା ସମ୍ମାନଦୃଷ୍ଟିରୁ ସେ ଉଚିତ ମନେ କଲାନାହିଁ । ଦୈବାତ୍ ପୁଷ୍କରିଣୀଟି ମଧ୍ୟ ତାର ପଥରେ ଆସି ପଡ଼ିଲା ।

ଘୋଡ଼ାରୁ ଓହ୍ଲାଇ ଧୀରେ ଧୀରେ କୂଳ - ପାଟକୁ ଆଗେଇ ଆସୁ ଆସୁ ଥମକି ଛିଡ଼ା ହୋଇଗଲା ସେ ।

ଗଛ ଉହାଡ଼କୁ ଆସି ଥରେ ଚାରିଆଡ଼େ ଦୃଷ୍ଟି ବୁଲାଇ ନେଇ କାହାରିକୁ ନଦେଖି ପୁଣି ଚାହିଁଲା ପୁଷ୍କରିଣୀଟିର ଆଡ଼େ ।

ଏକାକିନୀ ସ୍ନାନ କରୁଛି ତରୁଣୀଟି ।

ଅପୂର୍ବ ରୂପମୟୀ ତରୁଣୀ । ସର୍ବାଙ୍ଗରେ ଯୌବନର ଉଦ୍ଦାମ ଝଟିକା । ବିଶ୍ୱର ସମସ୍ତ ସୁନ୍ଦରୀଙ୍କର ସୌନ୍ଦର୍ଯ୍ୟରେ ଗଢ଼ା ଏକ୍ସି ଅନଙ୍ଗ-ମୋହିନୀ ମୂର୍ତ୍ତି । ସିକ୍ତ ବସନ ଭିତରୁ ଉଦ୍ଧତ ଯୌବନ ମୁଗ୍ଧ କଲା ଯୁବକ ରତିକାନ୍ତକୁ । ପଲକ ପଡ଼େନା । ନିର୍ଲଜଙ୍କ ପରି ଏକ ଦୃଷ୍ଟିରେ ଚାହିଁଥାଏ ଯୁବତୀଟିର ଅନାବୃତ ପୃଷ୍ଠ ଦେଶକୁ ।

ଯୁବତୀଟି ନିଃସଙ୍କୋଚରେ ସ୍ନାନ କରୁଥାଏ । କେବେ କେବେ ଅନାବୃତ ଦେହର ଉପରେ ଗାମୁଛା ବୁଲାଉଥାଏ, କେତେ-କେବେ ପୁଣି ବୁଡ଼ ଯାଉଥାଏ ପାଣିରେ ।

Digitized by srujanika@gmail.com

ରତିକାନ୍ତ ଭୁଲିଗଲା ସେ ତୃଷାତୁର ବୋଲି ।

ଏକ ସମୟରେ ତରୁଣୀ କୂଳରେ ଆସି ଠିଆହେଲା । ସିକ୍ତ ବସନ ବଦଳାଇବା ପୂର୍ବରୁ ଚାରିଆଡ଼େ ଦୃଷ୍ଟି ବୁଲାଇ ନେଲା । ନିଃସନ୍ଦେହ ହେବାପରେ ଅର୍ଦ୍ଧ ଉଲଗ୍ନ ହୋଇ ସେ ମୁଣ୍ଡ ପୋଛି ଲୁଗା ବଦଳାଇବାକୁ ଲାଗିଲା । ଏହାପରେ ସ୍ନାନକାର୍ଯ୍ୟ ସମାପନ କରି ଧୀରେ ଧୀରେ ଉପରକୁ ଉଠି ଗୋଟିଏ ସରୁ ରାସ୍ତା ଧରି ଚାଲିବାକୁ ଲାଗିଲା ।

ସିଏ ଯେ ରତିକାନ୍ତ କମ୍ପା ତାର ଅସ୍ତିତ୍ୱକୁ ଦେଖି ପାରିନାହିଁ ଏହା ଜଣା ପଡୁଥିଲା ତାର ନିର୍ଭୟ ଚାଲିରୁ ।

ରତିକାନ୍ତ ଏକଦୃଷ୍ଟିରେ ଚାହିଁଥାଏ ତାର ଗମନ ପଥକୁ । ସମ୍ପୂର୍ଣ୍ଣ ଅଦୃଶ୍ୟ ହେବାପରେ ଗୋଟାଏ ଦୀର୍ଘଶ୍ୱାସ ଛାଡ଼ି ରତିକାନ୍ତ ଆସିଲା କୂଳକୁ । ପୁଷ୍କରଣୀ ଜଳରେ ମୁହଁ ହାତ ଧୋଇ ଅଶ୍ୱ ତାଙ୍କୁ ଆସି ଅଶ୍ୱାରୋହଣ ପୂର୍ବକ ଫେରିଲା ଜମିଦାରଙ୍କର ଜଙ୍ଗଲରୁ ।

ମୁହୂର୍ତ୍ତକ ପାଇଁ ସେପରି ସେ ଭୁଲି ପାରୁନାହିଁ ଏହି ଅନନ୍ତ ଯୌବନା ଉର୍ବଶୀକୁ । କିପରି ପୁଣି ଦେଖା ହୋଇପାରେ, ପରିଚୟ ହୋଇପାରେ ସେ ସମସ୍ତ କଥା ବସିଥିବା ଯାକ ଚିନ୍ତାକରି ଦେଖିଛି । କାହାରିକୁ ପଚାରିବାର ଉପାୟ ନାହିଁ । ପିତା ଯଦି ଶୁଣି ପାରିବେ ସେ ଆଉ ଜୀବନରେ ରଖିବେ ନାହିଁ ।

ତାଙ୍କୁ ସେ ଭଲକରି ଜାଣେ । ବିରାଟ ସମ୍ପତ୍ତିର ଅଧିକାରୀ ହୋଇ ମୁଦ୍ଧା ଭୋଗ ବିଳାସ ପ୍ରତି ଆଦୌ ଆସକ୍ତ ନୁହନ୍ତି ସେ । ସବୁବେଳେ ଧର୍ମାନୁଷ୍ଠାନ ପ୍ରତି ସେ ଆଗ୍ରହଭାବ ଦେଖାଇଥାନ୍ତି ।

Digitized by srujanika@gmail.com

ଧର୍ମକାର୍ଯ୍ୟ ଓ ପରୋପକାରରେ ଅର୍ଥବ୍ୟୟ କରିବାକୁ ହାତ ତାଙ୍କର ସର୍ବଦା ଉନ୍ମୁକ୍ତ ।

ପରଦିନ କିଛି ଆଗରୁ ସେ ପୁଷ୍କରିଣୀ ପାଖରେ ଆସି ପହଞ୍ଚିଲା । ଆଜି ଆଉ ଘୋଡ଼ାରେ ନ ଆସି ପଦବ୍ରଜରେ ଆସି ଗୋଟିଏ ଛାୟାଚ୍ଛନ୍ନ ବୃକ୍ଷ ମୂଳରେ ରହି ନିଜକୁ ଲୁକ୍କାୟିତ ରଖି ଅପେକ୍ଷା କରିଥିଲା ସୁର-ସୁନ୍ଦରୀର ଦର୍ଶନ ଆଶାରେ ।

ହାତଘଡ଼ି ଉପରେ ବେଳେବେଳେ ଦୃଷ୍ଟି ଆସି ପଡୁଥାଏ ।

ଏହି ସମୟରେ ଦେଖି ପାରିଲା ଛଅ ଗୋଟି ତରୁଣୀ ପୁଷ୍କରିଣୀ ଆଡ଼େ ଆସୁଛନ୍ତି । କାଲି କାଲର ସେହି ତରୁଣୀଟି ତ' ସେମାନଙ୍କ ଭିତରେ ନାହିଁ । ମନେ ମନେ ଭାବିଲା, ବୋଧହୁଏ ସେ ଏମାନଙ୍କ ମେଳରେ ନଥାଏ । ଏମାନଙ୍କ ସହିତ ତାର ପରିଚୟ ଅଛି କି ନା କେଜାଣି ?

ଯୁବତୀ ଦଳଟି ପୁଷ୍କରିଣୀର ଜଳରେ ନିଜର କଟିଦେଶ ପର୍ଯ୍ୟନ୍ତ ବୁଡ଼ାଇ ଦେଲେ । ସେମାନଙ୍କ ମଧ୍ୟରେ ଆରମ୍ଭ ହେଲା ଜଳକ୍ରୀଡ଼ା । ବେଶ୍ ଭଲ ଲାଗୁଥିଲା ଚନ୍ଦ୍ରକାନ୍ତକୁ । ମନେ ମନେ ଭାବୁଥାଏ ସେହି ତରୁଣୀଟିର କଥା । ସେ ଯଦି ଏମାନଙ୍କ ମେଳରେ ଥାନ୍ତା ତାର କ୍ରୀଡ଼ା ନିଶ୍ଚୟ ଏମାନଙ୍କ ଅପେକ୍ଷା ଅଧିକ ଚିତ୍ତାକର୍ଷକ ହୁଅନ୍ତା ।

ଗୋଟାଏ ହସର ଲହର ଉଠିଲା ଯୁବତୀଙ୍କ ମେଳରୁ । ସେମାନେ ପରସ୍ପର ମଧ୍ୟରେ ଖେଳ କୌତୁକରେ ରତ ଅଛନ୍ତି । ବେଶ୍ ଉପଭୋଗ କରୁଥାଏ ଚନ୍ଦ୍ରକାନ୍ତ । ବେଳେ ବେଳେ ଘଡ଼ି ଦେଖି ଭାବୁଥାଏ, କାଲିକାର ସମୟ ତ' ହୋଇନାହିଁ— ହୁଏତ' ଆଉ ଟିକିଏ ପରେ ଆସିବ । ଯେତେଦୂର ସମ୍ଭବ

Digitized by srujanika@gmail.com

ଏମାନଙ୍କ ମେଳରୁ ସେ ଅଲଗା । ଏମାନଙ୍କ ମଧ୍ୟରୁ କାହାରିକୁ ପଚାରିଲେ କି ଯୁବତୀଟିର ପରିଚୟ ପାଇ ପାରିବ ନାହିଁ ।

କିନ୍ତୁ, ଏହା କି ସମ୍ଭବ ! ସମ୍ପୂର୍ଣ୍ଣ ଅପରିଚିତ ସେ ଏଠାରେ । ପୁରୁଷ କେହି ହୋଇଥିଲେ ବରଂ ପଚାରିବାର ସୁଯୋଗ ହୁଅନ୍ତା—ମାତ୍ର, ଏମାନେ ତ' ସମସ୍ତେ ନାରୀ, ପୁଣି ଯୁବତୀ !

ସ୍ନାନ ଶେଷ କରି ଯୁବତୀମାନେ ଲୁଗା ପାଲଟିବାକୁ ଲାଗିଲେ । ରତିକାନ୍ତ ଆଉ ଟିକିଏ ଗଭୀର ଲତାଗୁଳ୍ମ ଆଚ୍ଛାଦିତ ସ୍ଥାନରେ ଆସି ଆଶ୍ରୟ ନେଲା । ଯେପରିକି ଏତେ ଗୁଡ଼ିଏ ଦୃଷ୍ଟିର ସମ୍ମୁଖରେ ସେ ନ ପଡ଼େ । ପଡ଼ିଲେ ଲଜ୍ଜାର ସୀମା ରହିବ ନାହିଁ ଓ କୁତ୍ସା-ରଟନାର ସମ୍ଭାବନା ତ' ଅଛି ।

ଏକ ସମୟରେ ଯୁବତୀମାନେ ଚାଲିଗଲେ । ଗୁପ୍ତ ସ୍ଥାନରେ ଥାଇ ପୁଣି ଘଡ଼ି ଦେଖିଲା ରତିକାନ୍ତ । ସମୟ ଆସି ହେଲା । ଏଇଥର ବୋଧହୁଏ ସେ ଆସିବ, ଯାହା ପାଇଁ ଅସୀମ ଧୈର୍ଯ୍ୟ ନେଇ ସେ ଅପେକ୍ଷା କରୁଛି ।

ହଠାତ୍ ତୀକ୍ଷ୍ଣ ସଜାଗ ହୋଇ ଉଠିଲା ରତିକାନ୍ତର ଦୃଷ୍ଟି । ଏଇ ବୋଧହୁଏ ଆସୁଛି । ଦମକା ପବନଟା ଯେପରି ମାତାଲ ହୋଇ ତା' ଉପରେ ପଡ଼ୁଛି । ନିଜର ପରିଧେୟ ବସ୍ତ୍ରକୁ ସେ ଆୟତରେ ରଖି ପାରୁନାହିଁ । ସଜାଡ଼ିବା ପାଇଁ ଆପ୍ରାଣ ଚେଷ୍ଟା କରୁଛି ସେ, କିନ୍ତୁ ଅସ୍ତବ୍ୟସ୍ତ ହେଉଛି ବ୍ୟର୍ଥ ଚେଷ୍ଟା ଦେଖି ।

କୂଳ ପାଖକୁ ଆସି ଖଣ୍ଡିଏ ପଥର ଉପରେ ବସି ଗୋଡ଼ ଦୁଇଟାକୁ ପାଣି ଭିତରେ ଝୁଲାଇ ରଖି ହାତ ବଢ଼ାଇ ପାଣିରେ

Digitized by srujanika@gmail.com

କେତୋଟି ଗାର ଟାଣିଲା । ତରୁଣୀର ବାଲ୍ୟଖେଳା ଦେଖୁଥାଏ ରତିକାନ୍ତ । ସେ ମଧ୍ୟ ଆମୋଦ ଅନୁଭବ କରୁଥାଏ ।

ଏହାପରେ ତରୁଣୀଟି ବସନ ଅପସାରଣ କରି ଅନ୍ତର୍ବାସ ଖୋଲିବାକୁ ଲାଗିଲା । ସେଗୁଡ଼ିକ ପଥର ଉପରେ ରଖି ଅଣ୍ଟାଏ ପାଣିକୁ ଆସି ଥରେ ଦୁଇଥର ବୁଡ଼ା ଦେଇ ଗାମୁଛାରେ ସର୍ବାଙ୍ଗ ଘଷିବାକୁ ଲାଗିଲା । ସ୍ନାନ ଶେଷକରି ଅନ୍ତର୍ବାସ ଧୋଇ ଚୂପୁଡ଼ି ପଥର ଉପରେ ରଖି ଲୁଗା ବଦଳାଇ ଉପରକୁ ଉଠିଲା ଯିବାପାଇଁ । କେଉଁଆଡ଼େ ଦୃଷ୍ଟି ନାହିଁ, କେହି ପୁରୁଷ ହୁଏତ' ସ୍ନାନ ପାଇଁ ପୁଷ୍କରଣୀକୁ ଆସିପାରେ ସେଥିପ୍ରତି ଧ୍ୟାନ ମଧ୍ୟ ନାହିଁ । ଅତି ନିଶ୍ଚିନ୍ତ ମନରେ ସେ ତା'ର କାର୍ଯ୍ୟ ଶେଷ କରି ପଥର ଉପରେ ରଖିଥିବା ଅନ୍ତର୍ବାସଟିକୁ ହାତ ମୁଠାରେ ଧରି ଚାଲିଲା ଗୃହାଭିମୁଖରେ ।

ରତିକାନ୍ତ ଭାବୁଥିଲା ତାକୁ ଅନୁସରଣ କରିବ ବୋଲି, କିନ୍ତୁ କଣ ଭାବି ସେ ହଠାତ୍ ଗୁପ୍ତସ୍ଥାନରୁ ନ ବାହାରି ଆଉ ଟିକିଏ ଅପେକ୍ଷା କଲା କାହାରି ସନ୍ଦେହ-ଭାଜନ ଯେପରି ନ ହେବାକୁ ପଡ଼େ ।

ମାତ୍ର—ଏ କଣ ସେ ଦେଖୁଛି ! ଯୁବତୀଟିର ହାତରୁ ଖସି-ପଡ଼ିଲା ଅନ୍ତର୍ବାସଟି । ଭାବିଥିଲା ତନ୍ତୁ ସେ ପୁଣି ଉଠେଇ ନେବ, କିନ୍ତୁ ସିଏ କି ଏତେ ଅନ୍ୟମନସ୍କ ଯେ ହାତରୁ ଜିନିଷ ଖସିବା ପର୍ଯ୍ୟନ୍ତ ଜାଣି ପାରିଲା ନାହିଁ ।

ଯୁବତୀଟି ଅଦୃଶ୍ୟ ହୋଇଗଲା କେତୋଟି ମୁହୂର୍ତ୍ତ ଭିତରେ । କ୍ଷିପ୍ର ପଦରେ ଆସି ଯେଉଁଠି ଅନ୍ତର୍ବାସଟି ପଡ଼ିଥିଲା ସେଠାରୁ ବସ୍ତୁଟିକୁ ତନ୍ତୁ ଉଠାଇବ କି ନା ଚିନ୍ତା କରୁଛି, ଆଉ ଜଣେ ତରୁଣୀକୁ ପୁଷ୍କରଣୀ ଆଡ଼େ ଆସୁଥିବା ଦେଖି ସେ ଚେଷ୍ଟାରୁ ନିରସ୍ତ

Digitized by srujanika@gmail.com

ହୋଇ ଆଗନ୍ତୁକାର ନିକଟବର୍ତ୍ତୀ ହୋଇ କହିଲା—କ୍ଷମା କରିବେ, ମୁଁ ଆପଣଙ୍କର ଅପରିଚିତ। ତେବେ, ଯଦି ଦୟାକରି ଗୋଟିଏ କାମ କରି ପାରନ୍ତେ—

ତରୁଣୀଟି ମଧ୍ୟ ବିସ୍ମିତ ହୋଇଥିଲା ତାକୁ ଦେଖି ଓ ତାର କଥା ଶୁଣି। ଯୁବତୀ-ସୁଲଭ ଲଜ୍ଜାରେ ମୁହଁଟି ରଙ୍ଗା ପଡ଼ିଗଲା। ସୁନ୍ଦରୀ ନ ହେଲେ ମଧ୍ୟ କୁତ୍ସିତା କିମ୍ବା କୁରୂପା ନୁହେଁ—ତାକୁ ହତାଦର କରିଯାଇ ପାରେନା।

କଣ, କୁହନ୍ତୁ···ତରୁଣୀଟି ମୁହଁ ତଳକୁ କରି କହିଲା।

ଭୂ-ପତିତ ଅର୍କିବାସଟିକୁ ଦେଖାଇ ରତିକାନ୍ତ କହିଲା—ମୁଁ ଏଇବାଟ ଦେଇ ଫେରୁଥିଲି। ଦେଖିଲି ଜଣେ ଯୁବତୀ ସ୍ନାନ ଶେଷ କରି ଯାଉଥିବା ବେଳେ ତାଙ୍କ ହାତରୁ ଏହି ବସ୍ତୁଟି ଖସି ପଡ଼ିଛି। ହୁଏତ ସେ ଜାଣନ୍ତି ନାହିଁ। ଘରେ ପହଞ୍ଚି ସେ ନିଶ୍ଚୟ ବ୍ୟସ୍ତ ହେଉଥିବେ ବସ୍ତୁଟି ତାଙ୍କର ନ ପାଇ। ଆପଣ ଦୟାକରି ଯଦି ତାଙ୍କୁ ଦେଇ ପାରନ୍ତି—

ତରୁଣୀଟି ସେହିପରି ତଳମୁହାଁ ହୋଇ ବସ୍ତୁଟିକୁ ଉଠାଇ ନେବା ସମୟରେ ବୋଧହୁଏ ତାହା ଚିହ୍ନି ପାରି କହିଲା—ଏଇଟାତ ଦିଦିଙ୍କର। ଆଚ୍ଛା, ମୁଁ ଦେଇ ଦେବି—

ଧନ୍ୟବାଦ !—-ରତିକାନ୍ତ କହିଲା।

ଆପଣଙ୍କୁ ତ' ଏ ଗାଁରେ ଦେଖିନାହିଁ। ବୋଧହୁଏ—

ହଁ, ମୁଁ ଏଠାକୁ ଅଳ୍ପଦିନ ହେଲା ଆସିଛି। ଏଇଟା ଆମର ଜମିଦାରୀ। ବାପାଙ୍କ ସାଙ୍ଗରେ ବୁଲିବାକୁ ଆସିଛି। ବର୍ତ୍ତମାନ

Digitized by srujanika@gmail.com

କଲେଜ ଛୁଟି । ତେଣୁ ଛୁଟିଟା କଟାଇବା ପାଇଁ ମୁଁ ତାଙ୍କ ସାଙ୍ଗରେ ଆସିଛୁ ଆଜକୁ ଏକ ସପ୍ତାହ ହେଲା ।

ଆପଣ—ଆପଣ···ଯୁବତୀଟି ଆଉ କଣ କହିବ କହିବ ହୋଇ କହି ପାରିଲା ନାହିଁ ।

ତାର ଜଡ଼ତା ଭାବ ଦେଖି ରତିକାନ୍ତ ହସି ହସି କହିଲା—ନା-ନା, ସଙ୍କୋଚ କରିବାର କିଛି ନାହିଁ । ମୁଁ ତ' ଆପଣମାନଙ୍କ ପରି ସାମାନ୍ୟ ମନୁଷ୍ୟ ମାତ୍ର । ଆପଣମାନଙ୍କୁ ତ' ପ୍ରଜା ବୋଲି ଭାବିନ, ଏପରି ଅଧିକାର ମଧ୍ୟ ମୁଁ ପାଇନାହିଁ । ଆଚ୍ଛା, ଆପଣ ଯାଆନ୍ତୁ—

ରତିକାନ୍ତ ଯିବାକୁ କହିଲାରୁ ତରୁଣୀଟି କହିଲା—ଆପଣ-ମାନେ ଆଉ କେତେଦିନ ଏଠାରେ ଅଛନ୍ତି ?—

ଜାଣେନା, ତେବେ ଅନୁମାନ ଆଉ ଗୋଟିଏ ସପ୍ତାହ ।

ବୋଧହୁଏ ଏଇଆଡ଼େ ବୁଲିବୁଲି କରିବାକୁ ଆସନ୍ତି ?—

କାଲି ଆସିଥିଲି । ଆଚ୍ଛା—-ଆପଣଙ୍କର ନାମ କଣ ?—ମୋର ନାମ ହେଉଛି ରତିକାନ୍ତ ଚୌଧୁରୀ ।—

ମୋର ନାମ ଶମିତା ସାମନ୍ତ, ଦିଦିଙ୍କର ନାମ ବସୁଧା—

ରତିକାନ୍ତ ସଲଜ୍ଜ ହସ ହସି କହିଲା—ବେଶ୍ ନାମତ' ଆପଣମାନଙ୍କର । ଆଚ୍ଛା, ଆସୁଛି—ନମସ୍କାର···

ଉଭୟେ ବିଭିନ୍ନ ଦିଗରେ ବାହାରିଗଲେ ।



Digitized by srujanika@gmail.com

ଶମିତା ମୁହଁରୁ ବସୁଧା ସମସ୍ତ ଶୁଣିଲା । ପରିହାସ କରିବାକୁ ମଧ୍ୟ ଛାଡ଼ିନାହିଁ ସେ । ପରଦିନ ଠିକ୍ ସମୟରେ ସ୍ନାନ କରିବାକୁ ଆସିଥିଲା, କିନ୍ତୁ ପୂର୍ବପରି ସେ ଅତି ନିଶ୍ଚିନ୍ତ ହୋଇ ସ୍ନାନ କରି ପାରିଲା ନାହିଁ । ତାର ଖାଲି ଆଶଙ୍କା ହେଉଥାଏ ରତିକାନ୍ତ ଯେତେବେଳେ ତାକୁ ଦେଖିଛି, ନିଶ୍ଚୟ ଆକୃଷ୍ଟ ହୋଇଛି ସେ । ତାହା ନ ହୋଇଥିଲେ ଜମିଦାର ପୁଅ ହୋଇ ସାମାନ୍ୟ ଜଣେ ଗ୍ରାମ୍ୟ-ଯୁବତୀର ବସ୍ତୁଟି ପ୍ରତି ଏତେ ମାୟା ଦେଖାନ୍ତା କାହିଁକି ? ବୋଧହୁଏ ଲୁଚି ଲୁଚି ତାର ସୌନ୍ଦର୍ଯ୍ୟ ପାନ କରିଛି ଏବଂ ପରିଚୟ ପାଇଁ ବ୍ୟାକୁଳ ହେଉଛି । ଆଜି ପୁଣି କେଉଁଠି ଲୁଚି ରହି ସିଏ ତାକୁ ଦେଖୁ ନ ଥିବ ଏହାତ କିଏ କହିବ ହୁଏନା ।

ଅତି ସାବଧାନରେ ସେ ଚାରିଆଡ଼େ ଚାହିଁଲା । ନା, କେହି ନାହାନ୍ତି । ତଥାପି ଆଗପରି ନିର୍ଭୟ ନ ହୋଇ ସ୍ନାନ ସାରି ଫେରିଲା ଘରକୁ ।

ପରେ ପରେ ଶମିତା ଆସିଲା । ସେ ମଧ୍ୟ ଭାବିଥିଲା ଆଜି ରତିକାନ୍ତ ସହିତ ତାର ଦେଖା ହେବ । ବେଶ୍ ଭଦ୍ର ବ୍ୟବହାର ଲୋକଟିର । ଜମିଦାର-ସୁଲଭ ଔଦ୍ଧତ୍ୟତା ନାହିଁ । ଶାନ୍ତ, ଗମ୍ଭୀର ଓ ମାର୍ଜିତ ରୁଚି-ସମ୍ପନ୍ନ ବ୍ୟକ୍ତି ।

କିନ୍ତୁ ସେ ମଧ୍ୟ ହତାଶ ହୋଇ ଫେରିଲା ଘରକୁ ।

ବସୁଧା ଅପେକ୍ଷା କରିଥିଲା ଶମିତା ମୁହଁରୁ କିଛି ଶୁଣିବା ପାଇଁ । କିନ୍ତୁ ଶମିତାର ମୁହଁ ଆଡ଼େ ଚାହିଁ ବୁଝିପାରିଲା ଅଭିସାର ତାର ବ୍ୟର୍ଥ ହୋଇଛି ।

Digitized by srujanika@gmail.com

କଣ ଯେପରି ଲୁଗ୍ଣଇବାକୁ ଚେଷ୍ଟା କରୁଛି ସେ ।

କେତେକଥା ଭାବୁଥାଏ ବସୁଧା । ଶମିତା କ ରତ୍ନକାନ୍ତର ପ୍ରେମରେ ପଡ଼ିଛି ? ଅନେକଗୁଡ଼ାଏ କଥାବାର୍ତ୍ତା ହୋଇଛନ୍ତି ସେମାନେ, ତା ବୋଲି କ···ଆଉ କ କିଛି ଲୁଗ୍ଣଇଛି ଶମିତା ତାଂ' ଆଗରେ ? ରତ୍ନକାନ୍ତ କ ଆସିବ ବୋଲି କହି ଆସି ନ ଥିବାରୁ ମନରେ ଆଘାତ ପାଇଛି ଶମିତା ।

ତା ପରଦିନ ବସୁଧା ସ୍ନାନ କରିବା ପାଇଁ ଆଗରୁ ଗଲା ନାହିଁ । ଲୁଚି ଲୁଚି ଶମିତାକୁ ସେ ଅନୁସରଣ କରିବ ବୋଲି ଠିକ୍ କଲା । ଶମିତା ଘରୁ ବାହାରିବାର କିଛି ସମୟ ପରେ ଅନ୍ତ ସନ୍ତର୍ପଣରେ ଗଛର ଫାଙ୍କ ଦେଇ ଆସୁ ଆସୁ ଲକ୍ଷ୍ୟ ରଖିଥାଏ ତା ଉପରେ । ହଠାତ୍ ଗୋଟାଏ ଶବ୍ଦ ଶୁଣାଗଲା । ଘୋଡ଼ା ଟାପୁର ଶବ୍ଦ । ଟିକିଏ ଥମକି ଠିଆ ହୋଇଗଲା । ଶମିତା ମଧ୍ୟ ଅଟକି ଯାଇଥାଏ ଇତି ମଧ୍ୟରେ ।

ବସୁଧା ବୃକ୍ଷାନ୍ତରାଳରୁ ଅଶ୍ୱ, ଓ ଅଶ୍ୱାରୋହୀ ଉଭୟଙ୍କୁ ଦେଖି ପାରିଲା । ଅଶ୍ୱାରୋହୀ ପୁଷ୍କରିଣୀ ପାଖରେ ଅଶ୍ୱରୁ ଅବତରଣ କରି ଏଣେତେଣେ ଦୃଷ୍ଟି ସଞ୍ଚାରିତ କଲା । କାହାକୁ ଯେପରି ଖୋଜୁଛି ସେ, ମାତ୍ର ଅଳ୍ପ ସମୟ ପରେ ପୁଣି ସେ ଅଶ୍ୱ ପାଖକୁ ଆସି ପିଠିରେ ଉଠିବସି ବଲ୍‌ଗା ଟାଣି ଧରିଲା, ଶିକ୍ଷିତ ଅଶ୍ୱ, ତାକୁ ପୁଣି ଦଉଡ଼ାଇଦେଲା ଆଗକୁ ।

ପୁଣି କିଛିଦୂର ଆସି ଅଶ୍ୱ, ବଲ୍‌ଗା ଟାଣି ଧରିଲା ଅଶ୍ୱାରୋହୀ । ବସୁଧା ଦେଖିଲା ଶମିତା ପ୍ରାପ୍ତ ଆରୋହୀର ନିକଟ-ବର୍ତ୍ତୀ ହୋଇଛି । କିନ୍ତୁ ଏ କଣ ! ଶମିତା ହଠାତ୍ ପଡ଼ିଗଲା କାହିଁକି । ସିଏ କ ଝୁଣ୍ଟି ପଡ଼ୁଛି ?

Digitized by srujanika@gmail.com

ଅଶ୍ୱାରୋହୀ ସେତେବେଳକୁ ଅଶ୍ୱରୁ ଓହ୍ଲାଇ ପଡ଼ି ଧାଇଁଲାଣି ତା ଶମିତାର ନିକଟବର୍ତ୍ତୀ ହୋଇ କହିଲା—କଣ ହେଲା, ଶମିତା ଦେବୀ ।—ଇସ୍, ପଥରଟା ଝୁଣ୍ଟି ପଡ଼ିଛନ୍ତି । ନଅନ୍ତୁ, ରକ୍ତଟା ଆଗେ ପୋଛି ଦିଅନ୍ତୁତ ?...କହି ରତ୍ନକାନ୍ତ ରୁମାଲଟିକୁ ବଢ଼ାଇ ଦେଲା ଶମିତା ଆଡ଼କୁ ।

ନା-ନା, ଥାଉ—ଆପଣଙ୍କର ଏଡ଼େ ସୁନ୍ଦର ରୁମାଲଟା... ମୁଁ ଲୁଗା କାନରେ ପୋଛି ଦେଉଛି...ଶମିତା କହୁଥାଏ, କିନ୍ତୁ ଯନ୍ତ୍ରଣାରେ ମୁହଁ ତାର ବିକୃତ ହୋଇ ଆସୁଥାଏ । ରତ୍ନକାନ୍ତ ନିଜେ ରୁମାଲ ନେଇ ଶମିତାର ଗୋଡ଼ର ବୁଢ଼ା ଆଙ୍ଗୁଠିଟାକୁ ପୋଛି ଦେଇ ରୁମାଲରୁ ଫାଳେ ଚିରି ଆଙ୍ଗୁଠିଟାକୁ ବ୍ୟାଣ୍ଡେଜ ବାନ୍ଧିଦେଲା । କହିଲା—ଘରକୁ ଯିବେତ ? ଆଉ କେତେବାଟ କହିଲେ ?

ଅଳ୍ପ, ଏଇ ପାଖରେ...ମାତ୍ର ଏତିକି କହିଲାବେଳକୁ ଯନ୍ତ୍ରଣା ଯେପରି ଆହୁରି ବୃଦ୍ଧି ପାଇଥିବା ମନେହେଲା ।

ଉଠି ଘରକୁ ଯାଇ ପାରିବେତ' ? ନା, ଘୋଡ଼ାରେ ବସାଇ ଆପଣଙ୍କୁ ଘରେ ଛାଡ଼ିଦେଇ ଆସିବି—ରତ୍ନକାନ୍ତ ପଚାରିଲେ ।

ନା-ନା, ମୁଁ ଚାଲି ଚାଲି ଯାଇପାରିବି...

ଉଠିବାକୁ ଚେଷ୍ଟାକଲା ଶମିତା ।...ଠିଆହୋଇ ଯିବାଲାଗି ଉଦ୍ୟତ ହେଉଛି, ଶୁଣାଗଲା—ଶମିତା । ତାଙ୍କୁ ସାଙ୍ଗରେ ନେଇ ଘରକୁ ଆ' ।

କଣ୍ଠସ୍ୱର ଶୁଣି ଉଭୟେ ଚକିତରେ ସାମନାକୁ ଚାହିଁଲେ । ରତ୍ନକାନ୍ତ ଦେଖିଲା କିଏ ଜଣେ ସେମାନଙ୍କ ଆଡ଼େ ପଛକରି ଘର-ମୁହାଁ ହୋଇ ଚାଲିଛି । ଚିହ୍ନି ନ ପାରି ସେ ଚାହିଁଲା ଶମିତା ଆଡ଼େ ।

ବାବା ।...କହିଲା ଶମିତା ।

Digitized by srujanika@gmail.com

ତାହାହେଲେ ବସୁଧା । କପରେ ଟିକଏ ଅପ୍ରସ୍ତୁତ ହେଲ ରତ୍ନକାନ୍ତ । ଶମିତା ରତ୍ନକାନ୍ତଙ୍କୁ ଛୁଡ଼ାହେବା ଦେଖି କହିଲା—ଆସନ୍ତୁ···

ଯିବ ?—ରତ୍ନକାନ୍ତର କଣ୍ଠସ୍ୱର ଅତି ଦୁର୍ବଳ ।

ଯିବେ ନାହିଁ ? ଗରିବ ଘରକୁ ଗଲେ ସମ୍ମାନ ଉପରେ—

ନା ଶମିତା ଦେବୀ—ମୁଁ ସେ କଥା ଭାବୁ ନାହିଁ ।

ଯଦି ନ ଭାବଥାନ୍ତି, ଚଞ୍ଚଳ ଚାଲନ୍ତୁ । ଆଙ୍ଗୁଠିଟା ବଡ଼ କଷ୍ଟ ଦେଉଛି । ଘରକୁ ଗଲେ ଗୋଟାଏ କିଛି ଔଷଧ ଦେବାକୁ ହେବ ।

ରତ୍ନକାନ୍ତ ନିଜର ଅଶ୍ୱଟିକୁ ଆଉଁସି ଜଣାଇଦେଲା—ତୁ ଏଠାରେ ଚରୁଥା'—ମୁଁ ଅଳ୍ପ ସମୟ ଭିତରେ ଫେରୁଛି ।

ଶମିତାକୁ ଅନୁସରଣ କଲା ରତ୍ନକାନ୍ତ ।

ଅଣ ଓସାରିଆ ନାଳବନ୍ଧ ଉପର ଦେଇ ସେମାନେ ଆସୁଥିଲେ । ଦୁଇ ପାଖରେ ଘ୍ରେଷ୍ଟ ବଡ଼ ଗଛ । ଆଗରେ ଚାଲିଛି ଶମିତା, ରତ୍ନକାନ୍ତ ଯାଉଯାଉ ହଠାତ୍ ଗୋଟାଏ କୁଦାମାର ଆଗକୁ ଆସିବା ଦେଖି ଶମିତା ପଚାରିଲା—କଣ ?—

ଗୋଟାଏ ସାପ । ଆପଣମାନେ କେମିତି ଏହି ବିପଦ-ସଙ୍କୁଳ ରାସ୍ତାରେ ଯା-ଆସ କରୁଛନ୍ତି କେଜାଣି । ଆଉ ଟିକଏ ଆଗେଇ ଥିଲେ ତା ଉପରେ ଗୋଡ଼ ପଡ଼ିଥାନ୍ତା । ବାପ୍, ଗୋଟାଏ ଗ୍ରେଟରେ ମଣିଷ ଶେଷ ।

ଖିଲ ଖିଲ ହୋଇ ହସିଲା ଶମିତା ।

ଆପଣ ହସୁଛନ୍ତି । ଧନ୍ୟ ଆପଣଙ୍କର ସାହସ । ସେମାନଙ୍କ ସହିତ ବନ୍ଧୁତା ଅଛି ବୋଧହୁଏ ? ରତ୍ନକାନ୍ତ ହସି ହସି କହିଲା ।

ବନ୍ଧୁତା ନଥିଲେ ମୋତେ ଛାଡ଼ି ଆପଣଙ୍କ ପାଖକୁ ଯାଆନ୍ତା କାହିଁକି ? ଅପରିଚିତ ବୋଲି ମନେ କରି ତ···

Digitized by srujanika@gmail.com

ଆପଣ ତାହାହେଲେ ସାପଟାକୁ ଦେଖିଛନ୍ତି ?

ଶମିତା ହସି ହସି କହିଲା—ଦେଖିବିତ ତ' ମୁଁ ତାର ପରିଚିତ ବୋଲି ସଙ୍କେତ ଦେଲାରୁ ସେ ଆଡ଼େଇ ଗଲା ।

ସଙ୍କେତ ! ସେମାନେ ପୁଣି ସଙ୍କେତ ବୁଝନ୍ତି ?—

କୃତ୍ରିମ ବିରକ୍ତି ପ୍ରକାଶ କରି ଶମିତା କହିଲା—ଓଃ, ଆପଣଙ୍କୁ ପାରି ହେବ ନାହିଁ । ଆପଣ ଖାଲି ଲୋକବାକ ନେଇ ଚଳାଚଳ ହେଉଛନ୍ତି, କିନ୍ତୁ ଆମେ—ଉଃ, ଚିତ୍କାର କରି ଉଠି ଶମିତା ବସି ପଡ଼ିଲା ବାଟଟାରେ ।

କଣ ହେଲା—

ଶମିତା ସେତେବେଳେ ଆଙ୍ଗୁଠିଟାକୁ ହାତରେ ଚାପି ଧରି ଯନ୍ତ୍ରଣାରେ ବ୍ୟସ୍ତ ହେଉଥାଏ । ମୁହଁରେ ତାର ଅସଂଖ୍ୟ କୁଞ୍ଚିତ ରେଖା । ରତିକାନ୍ତ ବୁଝିପାରିଲା ଶମିତାର ଆଘାତ ଓ କ୍ଷତ ସାମାନ୍ୟ ନୁହେଁ । ବେଣ୍ଡେଜ୍ ଉପରେ ରକ୍ତ ମଧ୍ୟ ଦେଖା ଦେଇଛି ।

ଆପଣ ଆଉ ଚାଲି ପାରିବେ ନାହିଁ । ଏ ରାସ୍ତା ଯେପରି ହୋଇଛି, ଆପଣ...ମୁଁ ଆପଣଙ୍କୁ ଟେକି ନେଇ ଯାଉଛି..

ନା-ନା, ମୁଁ—କେମିତି ଟିକିଏ ଆର୍ତ୍ତନାଦ ପରି ଶୁଣାଗଲା ଶମିତାର କଣ୍ଠସ୍ୱର ।—ମୁଁ, ମୁଁ ଯାଇ ପାରିବି...

କିନ୍ତୁ ଉଠିବାକୁ ଚେଷ୍ଟା କରି ସୁଦ୍ଧା ଉଠି ପାରିଲା ନାହିଁ ଶମିତା । ପଡ଼ି ଯାଇଥାନ୍ତା, ମାତ୍ର ରତିକାନ୍ତ ସ୍ଥାନ କାଳ ପାତ୍ର ସବୁ ଭୁଲି ଶମିତାକୁ ଦୁଇହାତରେ ଉଠାଇ ନେଇ ଚାଲିବାକୁ ଲାଗିଲା । ଶମିତାର କୌଣସି ଆପତ୍ତି ସେ ଶୁଣିଲା ନାହିଁ ।

କେତେ ଗୁଡ଼ିଏ ଘର ଦେଖାଗଲା । କେତେଜଣ ବାଟୋଇ ବୋଧହୁଏ ଏଇଆଡ଼େ ଆସୁଛନ୍ତି । ରତିକାନ୍ତର ଯେପରି ଖିଆଲ

Digitized by srujanika@gmail.com

ହେଲ, ଗୋଟିଏ ଝିଅଟିକୁ ଏହିପରି ଭାବେ ଧରି ନେଉଥିବା ଦେଖିଲେ କଣ ସେମାନେ ମନେ କରିବେ । ଶମିତା ଖୁବ୍ କଡ଼ି, ତେବେ ବି ତ' କେହି ଭଲ ଦୃଷ୍ଟିରେ ଦେଖିବେ ନାହିଁ କିମ୍ବା କେହି ବୁଝିବେ ନାହିଁ । କାରଣ —ଗ୍ରାମ ଓ ସହର ଲୋକଙ୍କ ମଧ୍ୟରେ ମାନ୍ତଗତ ପ୍ରଭେଦତା ଯଥେଷ୍ଟ ରହିଛି ।

ଶମିତାର ଶରୀରଟାକୁ ଏତେ ବାଟ ବହନ କରି ଆଣିବା ହେତୁ ନିଜର ହାତ ଦୁଇଟାରେ ମଧ୍ୟ ଯନ୍ତ୍ରଣାର ଉଦ୍ରେକ ହେବାକୁ ଲାଗିଛି ।

ଶମିତାକୁ ଓହ୍ଲାଇ ଦେଉ ଦେଉ ରତିକାନ୍ତ କହିଲା—ଆପଣ ଏଥର ଚାଲିବାକୁ ଚେଷ୍ଟା କରନ୍ତୁ, ଦରକାର ପଡ଼ିଲେ ମୋର ହାତ ଧରିବେ···

କିନ୍ତୁ ହାତ ଆଉ ଧରିବାକୁ ପଡ଼ିଲା ନାହିଁ । ଶମିତା ଖୋଟେଇ ଖୋଟେଇ ଚାଲିଥାଏ । ଘର ପାଖ ହୋଇ ଆସିଲାରୁ ସେ କହିଲା—-ଆମେ ଆସିଲୁଣି । ଆପଣଙ୍କୁ ବୈଠକଖାନାରେ ବସାଇ ବାପାଙ୍କୁ ଖବର ଦେଉଛି । ସେ ଆପଣଙ୍କୁ ସାଙ୍ଗରେ ନେଇ ଆସିବାକୁ କହିଥିଲେ । ଆପଣତ ଆସିଲେ, ଏଣିକ ସେ ଆପଣ ବୁଝା-ବୁଝି ହେବେ ।

ରତିକାନ୍ତକୁ ବାହାର ଘରେ ବସାଇ ଭିତରକୁ ଗଲା ଶମିତା । ରତିକାନ୍ତ ଘର ଭିତରେ ଆଖି ବୁଲାଇ ଦେଖିଲା ଅତି ପରିଷ୍କାର ପରିଚ୍ଛନ୍ନ ଘରଟି । ଖଣ୍ଡିଏ ଟେବୁଲ, ଚାରୋଟି ଚେୟାର ବ୍ୟତୀତ ଘର ଭିତରେ ଆସବାବପତ୍ରର ବାହୁଲ୍ୟତା ନାହିଁ । କାନ୍ଥରେ ନେତାଜୀଙ୍କର ବଡ଼ ସାଇଜ୍ ର ଫଟୋ ଓ ଗୋଟିଏ କମ୍ପାନୀର ଖଣ୍ଡିଏ କ୍ୟାଲେଣ୍ଡର ।

Digitized by srujanika@gmail.com

ବୈଠକଖାନାରୁ ଅଗଣା ଓ ଘର ଭିତରକୁ ଯିବାପାଇଁ ଗୋଟିଏ ଦ୍ୱାର ଓ ଦୁଆର ମୁହଁରେ ଝୁଲୁଥାଏ ଆକାଶୀରଙ୍ଗର ଖଣ୍ଡିଏ ପର୍ଦ୍ଦା । ପର୍ଦ୍ଦା ଉପରେ ସୂଚୀ କାର୍ଯ୍ୟରେ କୋଣାର୍କର ପୂର୍ଣ୍ଣାଙ୍ଗ ଚିତ୍ର ।

ଟେବୁଲ ଉପରୁ "ଷ୍ଟେଟ୍ସମ୍ୟାନ୍" ଟିକୁ ଉଠାଇ ନେଲା ରତ୍ନକାନ୍ତ । ଦୁଇଦିନ ତଳର ସମ୍ବାଦ ପତ୍ରଟି । ବୋଧହୁଏ ପ୍ରତ୍ୟେହ ଏଠାକୁ ଡାକର ବ୍ୟବସ୍ଥା ନାହିଁ ଖବରକାଗଜ ଆସିବା ପାଇଁ ।

ପର୍ଦ୍ଦାଟି ଟିକିଏ ଆଡ଼େଇ ହୋଇଯିବା ମାତ୍ରେ ରତ୍ନକାନ୍ତ ଚମକି ପଡ଼ି ଠିଆ ହୋଇଯାଇ କହିଲା—ଆପଣ ?

ପର୍ଦ୍ଦାର ଆରପଟେ ଯିଏ ଠିଆ ହୋଇଥିଲା ସେ ମଧ୍ୟ ବିସ୍ମିତ କଣ୍ଠରେ କହିଲା···ଆପଣ !

ଉଭୟେ ଉଭୟଙ୍କୁ କେତୋଟି ମୁହୂର୍ତ୍ତ ଯାଏ ଅପଲକ ନେତ୍ରରେ ଚାହିଁଥିଲେ ।

ବସୁଧା ଓ ରତ୍ନକାନ୍ତ ।

ଉଭୟଙ୍କର ବିସ୍ମୟଭାବ କଟିଗଲା ଏକସମୟରେ । ବସୁଧା ଗୋଟିଏ ହାତରେ ପାଣି ଗିଲାସ ଓ ଅନ୍ୟ ହାତରେ ସାମାନ୍ୟ କିଛି ଜଳଖିଆ ନେଇ ଆସିଥିଲା । ବିସ୍ମୟତା କଟିଯିବା ପରେ ସେ ଧୀରେ ଧୀରେ ଟେବୁଲ ପାଖକୁ ଆଗେଇ ଆସି ପାଣି ଓ ଜଳଖିଆ ଟେବୁଲ ଉପରେ ରଖିଦେଇ ମୃଦୁସ୍ୱରରେ କହିଲା- -ଖାଆନ୍ତୁ ।—

କିନ୍ତୁ—

ନା, କିନ୍ତୁ କହିବେ ନାହିଁ । ଆପଣ ଏଠାକୁ ଅତିଥି କମ୍ପା ଜମିଦାର ହିସାବରେ ଆସି ନାହାନ୍ତି—ଆସିଛନ୍ତି କଲେଜର

Digitized by srujanika@gmail.com

ସହପାଠୀ ହିସାବରେ । ମନ୍ଦଓ ଆପଣ ଏଠାକାର ଜମିଦାର ଏହି ସମ୍ବାଦଟି ବର୍ତ୍ତମାନ ଜଣାପଡ଼ୁଛି, ମୁଁ କିନ୍ତୁ ଆପଣଙ୍କୁ ସହପାଠୀ ବୋଲି ଗ୍ରହଣ କରୁଛି ।

ଆପଣଙ୍କର ତ' ମଧ୍ୟ ସାଙ୍ଗ ହୋଇ ଖାଇବା ଉଚିତ ?— କହିଲି ରତିକାନ୍ତ ।

ନିଶ୍ଚୟ ଉଚିତ । ତେବେ ବର୍ତ୍ତମାନ ନ ଖାଇବାର କୈଫିୟତ ମୋର ହେଉଛି—ସନ୍ଧ୍ୟା-ବେଳେ ଠାକୁରଙ୍କର ଆରତି ନ ସରିଲେ ମୁଁ ଜଳଗ୍ରହଣ କରେନା ।—

ବସୁଧାର କଥା ଖୁବ୍ ସରଳ ଓ ସେ ବେଶ୍ ହସି ହସି କହୁଥାଏ ।

ହଷ୍ଟେଲରେ କଣ କରନ୍ତି ?—ପଚାରିଲି ରତିକାନ୍ତ ।

ଆପଣ ତର୍କ ଆଡ଼କୁ ଯାଉଛନ୍ତି, ରତିକାନ୍ତ ବାବୁ ! ହଷ୍ଟେଲ୍‌ରେ ମଧ୍ୟ ସେଇଆ । କେବେ ଯଦି ହଷ୍ଟେଲ ଆଡ଼େ ଯାଆନ୍ତି ଦେଖିବେ ମୋର ବେଡ୍‌ର ମୁଣ୍ଡପାଖର କାନ୍ଥରେ ଶଙ୍ଖ-ଚକ୍ରଧାରୀ ଏକ ମୂର୍ତ୍ତିର ଫଟୋ ଟଙ୍ଗା ହୋଇଛି । ପ୍ରତ୍ୟହ ସନ୍ଧ୍ୟାରେ ଆରତି ସାରି ତେବେ ଜଳଖିଆ କରିବାକୁ ବସେ । ତେବେ, ଆପଣଙ୍କର କଥା ରକ୍ଷା କରିବାକୁ ମୁଁ ସବ୍‌ସ୍ଟିଚ୍ୟୁଟ୍ ଦେଉଛି । ଶମିତା ଆପଣଙ୍କ ପାଖରେ ବସିବ । ବସନ୍ତୁ, ମୁଁ ଏଇ ସାଙ୍ଗେ ସାଙ୍ଗେ ତାକୁ ପଠାଇ ଦେଉଛି ।—

ଉତ୍ତରର ଅପେକ୍ଷା ନ କରି ବସୁଧା ଘରୁ ବାହାରିଗଲି ।

ରତିକାନ୍ତ ଅନେକଟା ସହଜ ହୋଇ ଆସିଥିଲି । ବସୁଧାକୁ ସେ କଲେଜରେ ଦେଖିଛି । କିନ୍ତୁ କୌଣସି ଦିନ କଥାବାର୍ତ୍ତା କରିବା ଲାଗି ଚେଷ୍ଟା କରିନାହିଁ । ଅନ୍ୟ ବନ୍ଧୁମାନଙ୍କ ମୁହଁରୁ ବସୁଧାର ରୂପର ପ୍ରଶଂସା ସେ ଶୁଣିଛି, ଅନେକେ ବସୁଧାକୁ ଶ୍ରଦ୍ଧା ଚକ୍ଷୁରେ

ଦେଖନ୍ତି, କେତେକ ପୁଣି କୁତ୍ସିତ ଇଙ୍ଗିତ ଦେଇ ତା ସମ୍ବନ୍ଧରେ ଆଲୋଚନା କରନ୍ତି । ରତିକାନ୍ତର ଅଂଶ କିନ୍ତୁ କେଉଁଥିରେ ନାହିଁ । ସହପାଠୀମାନଙ୍କ ମଧ୍ୟରେ ଆଲୋଚନା ପଡ଼ିଲେ ସେସ୍ଥାନରୁ ଉଠି ଆସେ ସେ । ଏପରିକି ଅନେକ ଛାତ୍ରୀଙ୍କର ନାମ ପର୍ଯ୍ୟନ୍ତ ସେ ଜାଣେନା ।

ଶମିତା ଆସି ପହଞ୍ଚିଲା । ହାତରେ ନିଜ ପାଇଁ ଜଳଖିଆ ଓ ପାଣି ଗିଲାସେ ନେଇ ଆସିଥାଏ । ରତିକାନ୍ତର ସାମ୍ନା ଚେୟାରରେ ବସି ହସି ହସି କହିଲା—ମୁଁ ଆସିଲି, ଏଥର ଆରମ୍ଭ କରନ୍ତୁ—

ତୁମର ଗୋଡ଼ର ଆଙ୍ଗୁଠି କେମିତି ଅଛି—ପଚାରିଲା ରତିକାନ୍ତ ।

ବାଃ, ଅଧଘଣ୍ଟା ପୂର୍ବରୁ ଯାହାକୁ "ଆପଣ" ବୋଲି କହୁଥିଲେ ସେ ପୁଣି "ତୁମେ" ହୋଇଗଲା ?—ବେଶତ, ଏଣିକି "ତୁମେ" କହିବେ । ଆଙ୍ଗୁଠି କଥା ପଚାରୁଛନ୍ତି ? ବାବା ଗୋଟାଏ ଅଏଣ୍ଟମେଣ୍ଟ ଲଗାଇ ଦେଇଛନ୍ତି । ଆଜି ଟିକିଏ ପରେ ଇଞ୍ଜେକ୍ସନ୍ ଦେବେ ।

ତୁମର ବାବା କ ଡାକ୍ତର ?—

ହଁ, ହୋମିଓ ପାଥ୍ ! ଏ ଗ୍ରାମରେ ସେ ଏକମାତ୍ର ଧନ୍ୱନ୍ତରୀ ।

ଉଭୟେ ଖାଉ ଖାଉ ଗଳ୍ପ କରୁଥିଲେ ।···ଶମିତା କହିଲା—ଆଚ୍ଛା, ଆପଣ କୁଆଡ଼େ ଦାଦାଙ୍କୁ ଆଗରୁ ଚହ୍ନିଛନ୍ତି ? ଏକା କଲେଜରେ ପଢ଼ୁଛନ୍ତି ବୋଲି ଶୁଣିଲି···

ଠିକ୍ ଶୁଣିଛନ୍ତି । ମାତ୍ର ଏଇ ପ୍ରଥମ ତାଙ୍କ ସହିତ କଥାବାର୍ତ୍ତା ଓ ଆଳାପ ହେଲା । ଦାଦା ମୋର ନାମ ଜାଣିଲେ କପରି କହନ୍ତୁ ତ ?—

Digitized by srujanika@gmail.com

ଆପଣ ଯେପରି ଭାବେ ମୋର ନାମ ଜାଣିଛନ୍ତି...କହୁ କହୁ ଚା' ହାତରେ ନେଇ ଭିତରକୁ ଆସିଲା ବସୁଧା । ମୁହଁରେ ତାର ସ୍ମିତ ହସ । ରତିକାନ୍ତ ପାଖରେ ଗୋଟିଏ ଓ ଅନ୍ୟ କପ୍ ଟି ଶମିତା ପାଖରେ ରଖି କହିଲା—ଅନ୍ଧାର ହୋଇ ଆସୁଛି । ଆପଣ ଏକା ଯିବେ କେମିତି ? ସାଙ୍ଗରେ କାହାକୁ ପଠାଇବି କି ?—

ରତିକାନ୍ତ ମୃଦୁ ହସି କହିଲା—ନା, ଦରକାର ନାହିଁ । ମୁଁ ଏକା ଯାଇ ପାରିବି ।

ବାବାଙ୍କ ସାଙ୍ଗରେ ଆସିଛନ୍ତି ନିଶ୍ଚୟ...ବସୁଧା ପଚାରିଲା ।

ହଁ, ଆଉ ଦୁଇତିନି ଦିନ ପରେ ଏଠାରୁ ଆମେ ଚାଲିଯିବୁ ।— ତା'ପରେ ସେହି ଗତାନୁଗତିକ ରୁଟିନ୍ ଓ୍ୱାର୍କ । ଠିକ୍ ଟାଇମ୍ ରେ ବହିପତ୍ର, କଲେଜ...ଆପଣ ବୋଧହୁଏ ଛୁଟିର ଶେଷ ବେଳକୁ ଯିବେ ?

ନା, ଆଗରୁ ହୁଏତ ଯାଇପାରେ । ଏହା ଭିତରେ ବିବାହର ପ୍ରଶ୍ନ ଉଠିଛି, କେଜାଣି କଣ ହେଉଛି, କିଛି ଖବର ଆସି ନାହିଁ ।

ବିବାହ କଥା ଶୁଣି ରତିକାନ୍ତର ମୁହଁଟା କିପରି ମଳିନ ହୋଇ ଆସିଲା । କହିଲା—ତାହାହେଲେ ଆସୁଛି ।—

ବସୁଧା ବିଦାୟ ସମ୍ଭାଷଣ ଜଣାଇ ଦୁଆର ମୁହଁ ପର୍ଯ୍ୟନ୍ତ ଆସିଲା । ଶମିତା ଆସିଥାଏ ତାର ପଛେ ପଛେ । ରତିକାନ୍ତ କିଛି ଦୂର ଆସି ପଛକୁ ଫେରି ଚାହିଁ ଦେଖିଲା—ବସୁଧା ଲଣ୍ଠନ ଧରି ଦୁଆର ମୁହଁରେ ଛିଡ଼ା ହୋଇଛି, ପାଖରେ ଶମିତା ମଧ୍ୟ ଅଛି ।

ଏକ ସମୟରେ ସେ ଦୃଷ୍ଟିର ଅନ୍ତରାଳକୁ ଚାଲି ଆସିଲା । ମୁଣ୍ଡରେ ତାର ଅସଂଖ୍ୟ ଚିନ୍ତା ସେତେବେଳେ । ବସୁଧା ଆଗରୁ

Digitized by srujanika@gmail.com

ଯାଇପାରେ, ଏହା ଭିତରେ ବିବାହର ପ୍ରଶ୍ନ ଉଠିଛି । ବିବାହ— କାହାର ? ବସୁଧାର ?

ଶମିତା ଯେପରି କଣ କହିବାକୁ ବସିଥିଲା । କିନ୍ତୁ କହୁଛି ତ' କହିଲା ନାହିଁ । କଣ ସେ କହିଥାନ୍ତା ? କହି ଥାଆନ୍ତା କି ଦାଦାର ବାହାଘର ପାଇଁ ନିମନ୍ତ୍ରଣ ରହିଲା, ନିଶ୍ଚୟ ଆସିବେ···

କିନ୍ତୁ—

ପୁଣି ଭାବିଲା ରତିକାନ୍ତ । ନା, ବୋଧହୁଏ ବସୁଧା ଆଜି କାହା କଥା କହୁଛି । ନିଜର ବାହାଘର କଥା କୌଣସି ତରୁଣୀ କି ସମ୍ପର୍କ ନଥିବା କୌଣସି ପୁରୁଷ ଆଗରେ ପ୍ରକାଶ କରିପାରେ ? ଆଗରୁ ଯଦିଓ ପରିଚୟ ଅଛି, ସେ ପରିଚୟ ତ' କେବଳ ପରିଚୟର ନାମାନ୍ତର ମାତ୍ର । ମାତ୍ର ଅଧଘଣ୍ଟା ଭିତରେ ବସୁଧା କି ଏତେ ଆପଣାର କରି ନେଇପାରିବ ତାକୁ ।

କାଲି କି ସେ ଆଉଥରେ ଆସିବ ଏଠାକୁ ? ଶମିତା ପାଖରୁ ଘଟଣାଟି ବୁଝିବ ? ନା, କପରି ଗୋଟାଏ ଲଜ୍ଜା ଭିତରେ ଭିତରେ ଅନୁଭବ କଲା ରତିକାନ୍ତ ।

ଦୁଇଦିନ ପରେ ଯିବାର ଥିଲା, କିନ୍ତୁ ଏଠାକୁ ଆସି ଦେଖିଲା ସେମାନଙ୍କର ଜିନିଷପତ୍ର ସବୁ ସଜଡ଼ା ସଜଡ଼ି ହୋଇଛି । ପ୍ରଥମରେ ଘଟଣାଟି କଣ ସେ ବୁଝି ପାରିଲା ନାହିଁ । ପରେ ତାଙ୍କର ଲୋକଙ୍କ ପାଖରୁ ଶୁଣିଲା—କାଲି ସେମାନଙ୍କୁ ଫେରି ଯିବାକୁ ହେବ ।

ମନେ ମନେ ବିରକ୍ତ ହେଲା ସେ । ବାପାଙ୍କର ସବୁବେଳେ ଅଦ୍ଭୁତ ଖିଆଲ । ହେଉ, ଉପାୟ ତ' କିଛି ନାହିଁ ।

ତରିଦିନ ଯଦିଓ ସେମାନେ ବାହାରୁ ବାହାରୁ ଦିନ ଗୋଟାଏ ବାକି ଥାଇଥିଲେ, ତଥାପି ରତିକାନ୍ତ ଟିକିଏ ହେଲେ

Digitized by srujanika@gmail.com

ସମସ୍ତ ପାଇନାହାଁନ୍ତି ବସୁଧା ସହିତ ଦେଖା କରିବାକୁ । ରାତିରେ ସେ ଠିକ୍ କରିଥିଲା, ସକାଳୁ ଉଠି ବସୁଧା ଓ ଶମିତା ସହିତ ଦେଖା କରି ବିଦାୟ ନେଇ ଆସିଥାନ୍ତା କିନ୍ତୁ ସୁଧାକାନ୍ତବାବୁ ତାଙ୍କୁ ଏପରି ଏକ କାର୍ଯ୍ୟରେ ଲଗାଇ ଦେଲେ ଯେ ସେ ଆଦୌ ଅବସର ପାଇଲା ନାହିଁ ବାହାରିବା ପର୍ଯ୍ୟନ୍ତ ।

ଷ୍ଟେସନରେ ଯେତେବେଳେ ଆସି ପହଞ୍ଚିଲେ ଦିନ ସେତେବେଳେ ଦୁଇଟା । ଆଗରୁ ଟିକେଟ୍ ହୋଇ ସାରିଥିଲା, ଗାଡ଼ି ଲେଟ୍ ଥିବା ହେତୁ ଅପେକ୍ଷା କରିଥିଲେ ସୁଧାକାନ୍ତବାବୁ ଓଏଟିଂ ରୁମ୍‌ରେ, ରତିକାନ୍ତ ବାହାରେ ବୁଲାବୁଲି କରୁଥାଏ ।

ଶମିତା କେଉଁଠି ଥିଲା କେଜାଣି, ହଠାତ୍ ଆସି ଠିଆହେଲା ସାମ୍‌ନାରେ । ତାଙ୍କୁ ଦେଖି ରତିକାନ୍ତ ଏପରି ବିସ୍ମିତ ହୋଇ ପଡ଼ିଥିଲା ଯେ କଣ ପଚାରିବ ଆଗେ ସେ ଭାବି ପାରିଲା ନାହିଁ ।

ଆପଣ ଏଠି କାହିଁକି ? କୁଆଡ଼େ ଯିବେ ବୋଧହୁଏ ?

ହଁ, ଆମ୍ଭେମାନେ ଆଜି ଫେରି ଯାଉଛୁ । ଆପଣ ଏଠାରେ କାହିଁକି ?

ଶମି —

ଡାକ ଶୁଣି ଶମିତା ଚାହିଁବା ସଙ୍ଗେ ସଙ୍ଗେ ରତିକାନ୍ତ ମଧ୍ୟ ଚାହିଁଲା ।

ବୁକ୍ ଷ୍ଟଲ ପାଖରେ ଠିଆ ହୋଇଛି ବସୁଧା ।

ହାତରେ ତାର କେତେ ଗୁଡ଼ାଏ କମଳା ଲେମ୍ବୁ ।

ଶମିତା ଦଉଡ଼ି ଆସିଲା । ବସୁଧା ହାତରୁ ଦୁଇଟି ଲେମ୍ବୁ ନେଇ ପୁଣି ଫେରି ଆସିଲା ରତିକାନ୍ତ ପାଖକୁ । ବସୁଧା କଣ ଯେପରି କହିଲା ଶମିତାକୁ, ରତିକାନ୍ତ ତାହା ଲକ୍ଷ୍ୟ କରିଛି ।

Digitized by srujanika@gmail.com

ନଅନ୍ତୁ···ଶମିତା ଗୋଟିଏ କମଳା ବଢ଼ାଇଦେଲା ।

ବିଧାନ୍ଵିତ ହୋଇ ରତ୍ନକାନ୍ତ ଗୃହିଁଲ ବସୁଧା ଆଡ଼େ । ଦେଖିଲା, ବସୁଧା ମୁହଁ ବୁଲାଇ ନେଲା ଚଟ୍‌କରି ।

ନେଉ ନାହାନ୍ତି କାହିଁକି ?···ମୃଦୁ ଧମକ ଦେଇ କହିଲା ଶମିତା ।

ଶମିତାର କହିବା ଢଙ୍ଗ ଦେଖି ହସି ପକାଇଲା ରତ୍ନକାନ୍ତ । କହିଲା—ନେବାକୁତ ସମୟ ଲାଗିବ । ଆପଣ ବ୍ୟସ୍ତ ହେଉଛନ୍ତି କାହିଁକି ? ଆଗେ କହନ୍ତୁତ' ଆପଣମାନେ ଷ୍ଟେସନକୁ କାହିଁକି ଆସିଛନ୍ତି ?

ବାଃରେ !—ନାନାର ବାହାଘର, ଆମେ ଯିବୁନାହିଁ ।··· ଶମିତାର ଆଖି ଦୁଇଟି ଉପରକୁ ଖୋସି ହୋଇଗଲା ଯେପରି ।

କିନ୍ତୁ ରତ୍ନକାନ୍ତର ଅବସ୍ଥା ସେତେବେଳେ ଭିନ୍ନ ପ୍ରକାର । ନାନାର ବାହାଘର ହେଉଛି ଶୁଣି ମୁଣ୍ଡରେ ତାର ବଜ୍ର ଯେପରି ଅସି ପଡ଼ିଲା । ଶମିତା ତା ଆଡ଼େ କେତୋଟି ମୁହୂର୍ତ୍ତ ଯାଏ ଗୃହିଁ କହିଲା—କଣ ହେଲା ଆପଣଙ୍କର ? ଧରନ୍ତୁ—

ଅଳସ ହାତରେ ଶମିତା ହାତରୁ କମଳା ଲେମ୍ବୁଟିକୁ ନେଇ ରତ୍ନକାନ୍ତ ପଚାରିଲା—ବସୁଧା ଦେବୀଙ୍କର ବିବାହ କେଉଁଠି ଠିକ୍ ହେଲା ?

ହସିଲା ଶମିତା । ହସର ଦମକରେ ତାର ସର୍ବାଙ୍ଗ ଦୋହଲି ଦୋହଲି ଉଠୁଥାଏ । ହସ ଦେଖି କେତେକ ଯାତ୍ରୀଙ୍କର ଦୃଷ୍ଟି ମଧ୍ୟ ସେମାନଙ୍କ ଉପରେ ପଡ଼ିଲା, କିନ୍ତୁ ସେଥିପ୍ରତି ଶମିତାର ଭ୍ରୂକ୍ଷେପ ନାହିଁ । ସେଇପରି ହସି ହସି କହିଲା—ଆପଣ ଘରି ବୋକା । ବସୁଧା ନାନଙ୍କର ବାହାଘର କାହିଁକି ହେବ ? ସେ ଆଉ

Digitized by srujanika@gmail.com

ଏକ ନାମ, ମୋର ମାଉସୀ ଝିଅ ନାମ । ଆମେ ତିନି ଗୃହହୀନ ଭାଇରେ ଫେରୁଛୁ ଯେ । ନାନାଙ୍କରତ’ କଲେଜ ଖୋଲିବ, ତେବେ ସେ କେବେ କରିବେ ନାହିଁ ।

ଏତେବେଳକେ ଯେପରି ରତିକାନ୍ତ ଦେହରୁ ଜର ଛାଡ଼ିଲା । କଣ କହିବାକୁ ଯାଉଥିଲା ଏହି ସମୟରେ ଶମିତା କହିଲା—ଏଇତ ବାପା କାହା ସାଙ୍ଗରେ କଥାବାର୍ତ୍ତା ହେଉ ହେଉ ଆସୁଛନ୍ତି ।

ରତିକାନ୍ତ ପଛକୁ ଚାହିଁଲା । ଦେଖିଲା ସୁଧାକାନ୍ତ ବାବୁଙ୍କ ସହିତ ଆଉ ଜଣେ ଭଦ୍ରବ୍ୟକ୍ତି କଥାବାର୍ତ୍ତା ହୋଇ ଆସୁଛନ୍ତି । ଇଏ କି ତାହାହେଲେ ଶମିତାଙ୍କର ବାପା । ସେଦିନ ଦେଖିବାର ସୁବିଧା ସୁଯୋଗ ସେ ପାଇ ନଥିଲା । ପରିଚୟ ହୋଇନାହିଁ । କିନ୍ତୁ ବସୁଧା ଓ ଶମିତା ପାଖରୁ ତାର ପରିଚୟ ତ’ ପାଇଥିବେ । ଯଦି ସେ କହିଥାନ୍ତି ବାବାଙ୍କ ଆଗରେ, ଯେ ସେଦିନ ତାଙ୍କ ଘରକୁ ଯାଇ ସେ ଆତିଥେୟତା ଲାଭ କରି ଆସିଛି, ତାହାହେଲେ ବାବା ମନରେ କଣ ଭାବିବେ କେଜାଣି । ନିଶ୍ଚୟ ସେ ଭାବିବେ ଆମର ମର୍ଯ୍ୟାଦା ଉପରେ ଆଞ୍ଚ ଆସିଛି । ଖୁବ୍ ସମ୍ଭବ ତାକୁ ସେ ଅପମାନ କରି ପାରନ୍ତି ।

ଶମିତାକୁ ସେ ବିଦାୟ କରିବାକୁ ବସିଥିଲା, କିନ୍ତୁ ସେତେବେଳକୁ ସୁଧାକାନ୍ତ ବାବୁ ଓ ଯୋଗେଶ୍ୱର ବାବୁ ଅତି ନିକଟକୁ ଆସି ଗଲେଣି । ସେ ଆଉ ସୁଯୋଗ ପାଇଲା ନାହିଁ ଶମିତାକୁ କହିବାକୁ । ଶମିତା ମଧ୍ୟ କିପରି ବୋକା ବୋକା ଦୃଷ୍ଟିରେ ଚାହିଁଥାଏ ସେମାନଙ୍କ ଆଡ଼କୁ ।

ଶମି—ଡ଼ାକିଲେ ଯୋଗେଶ୍ୱର ବାବୁ ।

ଶମିତା ଦ୍ୱିଧାପଦରେ ଆଗେଇ ଆସିବା ମାତ୍ରେ ଯୋଗେଶ୍ୱର ବାବୁ କହିଲେ—ରଜାସାହେବଙ୍କୁ ପ୍ରଣାମ କର ।

Digitized by srujanika@gmail.com

ରାଜାସାହେବ !—

ହଁ, ରାଜାଙ୍କ ପରି ଚେହେରା । ଖୁବ୍ ଦୀର୍ଘକାୟ ବ୍ୟକ୍ତି । ପୋଷାକ ଅତି ଆଧୁନିକ ଧରଣର । ଆଖି ଦୁଇଟି ଉଜ୍ଜ୍ୱଳ । ଦେଖିଲେ ପାଖକୁ ଯିବାକୁ ଭୟ କରେ । ଝଙ୍କାଳିଆ ନିଶ, ବାଘ ମୁହଁପରି ଗୋଲ ମୁହଁ—ଶମିତାର ଆଗେ ଭୟ ହେଲା ପାଖକୁ ଯିବାକୁ ।

କୌଣସି ପ୍ରକାରେ ନଇଁପଡ଼ି ପ୍ରଣାମ କଲା । ରାଜାସାହେବ ମୁଣ୍ଡରେ ହାତ ବୁଲାଇ ଦେଲେ । ପଞ୍ଝାତ ନୁହେଁ, ବାଘର ଥାବା ଯେପରି ।

ରତି !—ରାଜାସାହେବ ଡ଼ାକଲେ । ଶମିତାର ମନେହେଲା ଗୋଟାଏ ହିଂସ୍ର ବ୍ୟାଘ୍ର ଯେପରି ହୁଙ୍କାର ଦେଇ ଉଠିଲା ।

ରତିକାନ୍ତ ଧୀରେ ଧୀରେ ଆଗେଇ ଆସୁଥାଏ । ଶମିତା ଯୋଗେଶ୍ୱରବାବୁଙ୍କ ପାଖକୁ ଆଉ ଟିକିଏ ଲଗି ଆସି ଠିଆହେଲା । ରତିକାନ୍ତ ପାଖକୁ ଆସିବାକ୍ଷଣି ସୁଧାକାନ୍ତ ବାବୁ କହିଲେ—ଏ ହେଉଛନ୍ତି ମୋର ବାଲ୍ୟବନ୍ଧୁ । ପ୍ରଣାମ କର···

ରତିକାନ୍ତ ପ୍ରଣାମ କଲା ।

ଆଗେ ଆଗେ ଦୁଇବନ୍ଧୁ ଚାଲିଥାନ୍ତି । ପଛରେ ଶମିତା ଓ ରତିକାନ୍ତ । ଉଭୟେ ନୀରବ । ଏପରି ଅବସ୍ଥା ଭିତରେ ସେମାନେ ଆସି ପଡ଼ିବେ ବୋଲି କେହି ଆଶଙ୍କା କରି ନ ଥିଲେ । ଉଭୟେ ଉଭୟଙ୍କୁ କିଛି ପଚାରିଥାନ୍ତେ, ସେମାନଙ୍କ ମୁଖର ଭାବ ଦେଖି ତାହା ମନେ ହେଉଥିଲା—କିନ୍ତୁ ଆଗରେ ପୁରୁଷ-ସିଂହ—ଉଭୟେ ଅଧା ପ୍ରାଣ ସେତେବେଳେ ।

ଅତି ଆଶ୍ଚର୍ଯ୍ୟ ଯୋଗାଯୋଗ । ଯେଉଁ ଓ୍ୱେଟିଂ ରୁମ୍ ପାଖରେ ରାଜବାଟୀର ସାମାନ୍ ପ୍ରଭୃତି ଥିଲା ସେହି ରୁମ୍‌ର ବାହାରେ

Digitized by srujanika@gmail.com

ଯୋଗେଶ୍ୱର ବାବୁ ମଧ ତାଙ୍କର ଲଗେଜ୍ ଇତ୍ୟାଦି ରଖିଥିଲେ ଏବଂ ଲଗେଜ୍‌ର ପଛପଟରେ ଥାଏ ବସୁଧା ।

ସେମାନଙ୍କୁ ନିକଟସ୍ଥ ହେବା ଦେଖି ବସୁଧା ମନେ ମନେ କଣ ଭାବୁଥିଲା କେଜାଣି, ଗୋଟିଏ ଷ୍ଟମ୍ବର ଆଢୁଆଳରେ ଆସି ଠିଆ ହୋଇଗଲା ଏକପ୍ରକାର ଆତ୍ମଗୋପନ କରି । କିନ୍ତୁ ଯୋଗେଶ୍ୱର ବାବୁ ସ୍ନେହାର୍ଦ୍ର କଣ୍ଠରେ ଡାକଲେ—ବସୁ, ଏଠିକି ଆ'...

ବସୁଧାର ସମସ୍ତ ଶରୀରଟା କମ୍ପି ଉଠିଲା । ପଣ୍ଟୋନ ବର୍ଡ଼ିକୁ ସଜାଡ଼ି ନେଇ ଧୀରେ ଧୀରେ ଆଗେଇ ରାଜାସାହେବଙ୍କୁ ପ୍ରଣାମକରି, ଯୋଗେଶ୍ୱର ବାବୁଙ୍କର ପାଦସ୍ପର୍ଶ କରି ସାରିବାପରେ ହାତଯୋଡ଼ି ନମସ୍କାର ଜଣାଇଲା ରତିକାନ୍ତକୁ ।

ଏହାଙ୍କୁ ତୁ ଚିହ୍ନିଛୁ ମା !—ଯୋଗେଶ୍ୱର ବାବୁ ମୁଗ୍‌ଧ ଦୃଷ୍ଟିରେ କନ୍ୟା ଆଡ଼େ ଚାହିଁ ପଚାରିଲେ । ବଡ଼ ଲଜ୍ଜା ଲାଗିଲା ତାକୁ । କଣ ଏପରି ଦେଖୁଥିବେ ସେ । ଆହୁରି ସଙ୍କୁଚିତ ହୋଇ ଅତି ନମ୍ର ସ୍ୱରରେ କହିଲା—ଚିହ୍ନିଛି ବାବା !

ଚିହ୍ନିଛୁ ମା ।—

ଓଃ, କି ଭୟଙ୍କର କଣ୍ଠସ୍ୱର । ସିଂହ ବୋଧହୁଏ ଗର୍ଜ୍ଜନ କରି ଉଠିଲା । ବସୁଧାର ମୁହଁରୁ କଥା ବାହାରିଲା ନାହିଁ । କେବଳ ମୁଣ୍ଡ ଟୁଙ୍ଗାରିଲା, ଯାହାର ଅର୍ଥ ସେ ଚିହ୍ନିଛି ।

କିପରି ଚିହ୍ନିଲୁ ମା !—ଯୋଗେଶ୍ୱର ବାବୁ ପଚାରିଲେ ।

ଧୀରେ ଧୀରେ କହିଲା ବସୁଧା—ଅନେକ ଦିନ ତଳେ ଆପଣ ରାଜାସାହେବଙ୍କର ଖଣ୍ଡିଏ ଫଟୋ ଦେଖାଇ କହିଥିଲେ, ଆପଣ ତାଙ୍କର ବନ୍ଧୁ ବୋଲି । ଦୁହେଁ ଏକା ସାଙ୍ଗରେ ଅନେକ ଦିନଯାଏ କଲେଜରେ ପଢୁଥିଲେ । ଫଟୋ ଖଣ୍ଡିକ ଏ ପର୍ଯ୍ୟନ୍ତ ମୁଁ ପାଖରେ ରଖିଛି ।

Digitized by srujanika@gmail.com

ଶର୍ମିଷ୍ଠା ଓ ରତିକାନ୍ତ ଦୁହେଁ ଅବାକ୍ ।

ଦୁହେଁ ଲକ୍ଷ୍ୟକଲେ ରାଜାସାହେବଙ୍କର ମୁଖମଣ୍ଡଳ ଉଜ୍ଜ୍ୱଳ ହୋଇ ଉଠିଛି ।

ତାହାହେଲେ ଗୋଟାଏ ସମ୍ବନ୍ଧ ରହିଛି ଅନେକ ଦିନରୁ ।

ରାଜାସାହେବ ହସି ହସି କହିଲେ—ଦେଖୁଛି ରତି ମଧ୍ୟ ତୁମମାନଙ୍କ ଦଳେ ।—ଶର୍ମିଷ୍ଠା ଓ ରତିକାନ୍ତ ଆଡ଼େ ଚାହିଁଲେ ରାଜାସାହେବ । ସେତେବେଳେ ଶର୍ମିଷ୍ଠା ହୟତ ପ୍ରାୟ ଲାଗିଆସି-ଥାଏ ଯୋଗେଶ୍ୱର ବାବୁଙ୍କ ପାଖକୁ । ବସୁଧା ଶର୍ମିଷ୍ଠା ଓ ରତିକାନ୍ତ କ ଉତ୍ତର ଦେବେ ଶୁଣିବାପାଇଁ ରାଜାସାହେବ ଅପେକ୍ଷା କରୁଥାନ୍ତି ।

ଉତ୍ତର ଦେଲା ରତିକାନ୍ତ । କହିଲା ବସୁଧା ଆମର କଲେଜରେ ପଢ଼େ, ବାବା !

ବସୁଧା ! ହୁ ଇଜ୍ ସି···ରାଜାସାହେବ ବସୁଧା ଉପରେ ଦୃଷ୍ଟି ବୁଲାଇ ନେଇ ପୁଣି ଦୃଷ୍ଟି ଫେରାଇ ଆଣିଲେ ଶର୍ମିଷ୍ଠା ଆଡ଼କୁ ।

ମୁଁ, ରାଜାସାହେବ !—ଧୀର ଓ ନମ୍ର କଣ୍ଠରେ କହିଲା ବସୁଧା ।

ଆଇ-ସି···ରାଜାସାହେବ ଯେପରିଭାବେ ଗୋଡ଼ରୁ ମୁଣ୍ଡଯାଏ ତାକୁ ଦେଖିଲେ ଲଜ୍ଜା ଲାଗିଲା ବସୁଧାର । ମୁହଁ ତଳକୁ କଲା ସେ ।

ରାଜାସାହେବ ଯୋଗେଶ୍ୱରବାବୁଙ୍କର କାନ୍ଧରେ ହାତ ପକାଇ ତାଙ୍କୁ କିଛି ଦୂରକୁ ନେଇ ଆସି ତାଙ୍କର କାନ ପାଖରେ ମୁହଁ ରଖି କଣ କହିଲେ ଅନ୍ୟମାନେ ତାହା ଶୁଣି ପାରିଲେ ନାହିଁ । ଟ୍ରେନ୍ ଆସିବାର ସଙ୍କେତ ଶୁଣି ଯୋଗେଶ୍ୱର ବାବୁ ଫେରି ଆସିଲେ ଝିଅମାନଙ୍କ ପାଖକୁ । ରତିକାନ୍ତ ମଧ୍ୟ ଯୋଗେଶ୍ୱରବାବୁଙ୍କୁ ନମସ୍କାର କରି ଚାଲିଆସିଲା ।

Digitized by srujanika@gmail.com

ପୁଣି ସେ ରତିକାନ୍ତକୁ ଆସିବାକୁ ଦେବ ଏବଂ ତାହା ଅତିଶୀଘ୍ର ଏହା ସେ ଆଶା କରି ନ ଥିଲା । କଲେଜରେ ଦେଖାହୁଏ ବସୁଧା ସହିତ । ଦୁହେଁ କଥା କହିବାର ସୁଯୋଗ ପାଆନ୍ତି ନାହିଁ । ସୁଯୋଗ ନ ପାଇଛନ୍ତି କହିବା ପାଇଁ ନାହାନ୍ତି ସେକଥା ନୁହେଁ । ସାଙ୍ଗ ସାଥୀମାନଙ୍କର ମନ୍ତବ୍ୟରୁ ଦୂରେଇ ରହିବା ପାଇଁ ସେମାନେ ସାବଧାନ ଥାଆନ୍ତି ।

ହଷ୍ଟେଲରେ ଥାଏ ବସୁଧା । ସେଠାରେ ମଧ୍ୟ ଦେଖା କରିବା ସମ୍ଭବ ନୁହେଁ ।

ତଥାପି ସେଉଁଟିକକ ସମୟ ପାଇଁ ସେମାନଙ୍କ ଦେଖାହୁଏ, ଦୁହେଁ ଏପରି ସାବଧାନତା ସହକାରେ ସଙ୍କେତ ବିନିମୟ କରନ୍ତି ଯେ ଅନ୍ୟମାନଙ୍କ ପକ୍ଷରେ ତାହା ବୁଝିବା କଷ୍ଟକର ।

ଦିନେ କିନ୍ତୁ ରତିକାନ୍ତ ଏକ ଆଶ୍ଚର୍ଯ୍ୟ କାଣ୍ଡ କରି ବସିଲା । କମନ୍ ରୁମ୍ ଭିତରେ ବସି କଣ ଖଣ୍ଡିଏ ପତ୍ରିକା ଉପରେ ଆଖି ବୁଲଉଛି, ଏହି ସମୟରେ ବସୁଧା ଆସି ତାର ସାମ୍ନା ଚେୟାରଟିରେ ବସି ପଡ଼ିଲା । ବସୁଧାକୁ ଦେଖି ଆଶ୍ଚର୍ଯ୍ୟ ହେଲା ରତିକାନ୍ତ । ରୁମ୍ ଭିତରେ ଆଖି ବୁଲାଇ ଆଣିଲା । ଦେଖିଲା ଅନେକ ଗୁଡ଼ିଏ ଚକ୍ଷୁ ସେମାନଙ୍କ ଉପରେ ଆସି ପଡ଼ୁଛି । କାହାର ମୁଖରେ ବିସ୍ମୟର ଚିହ୍ନ, କେହି ପୁଣି ମୁରୁକି ମୁରୁକି ହସିବାକୁ ଲାଗିଛି ।

ବସୁଧାର ସେଥିପ୍ରତି ଦୃଷ୍ଟି ନାହିଁ ।

କଣ ହୋଇଛି ବସୁଧା ! ତୁମର ଶରୀର ଅସୁସ୍ଥ ଥିଲାପରି ମନେ ହେଉଛି—କହିଲା ରତିକାନ୍ତ ।

Digitized by srujanika@gmail.com

ରତିକାନ୍ତ—

ଚମକି ପଡ଼ିଲା ରତିକାନ୍ତ । ଏଇ ପ୍ରଥମ ଶୁଣିଲା ରତିକାନ୍ତର ନାମ ମୁହଁରେ ତାର ଉଚ୍ଚାରିତ ହେବା । ଭ୍ରୂ ଦୁଇଟି ତାର କୁଞ୍ଚିତ ହୋଇ ଆସିଲା ।

କିଛି କି ମନେ କରୁଛ ରତିକାନ୍ତ, ତୁମର ନାମ ଓ 'ଆପଣ' ପରିବର୍ତ୍ତେ 'ତୁମର' ବୋଲି କହିଲାରୁ ?—

ନା-ନା, ମନେ କରିବି କାହିଁକି ? ଆମେତ' ସମସ୍ତେ ସମସ୍ତଙ୍କର ବନ୍ଧୁ ।

ମୁଁ ଆଜି ରାତି ଗାଡ଼ିରେ ଘରକୁ ଯାଉଛି, ରତିକାନ୍ତ ।

ଘରକୁ ! କାହିଁକି ?—

ମୁହଁ ତଳକୁ କଲା ବସୁଧା । ବସୁଧାର ଲଜ୍ଜାବନତ ମୁହଁ ଆଡ଼େ ଚାହିଁଥାଏ ରତିକାନ୍ତ ।

କିଛି କହିଲ ନାହିଁ ବସୁଧା—

ମୁଁ କହି ପାରିବି ନାହିଁ, ରତି—ମୁଁ କହି ପାରିବି ନାହିଁ···କି ଏକ ଅସ୍ୱାଭାବିକ ଢଙ୍ଗ କରି ରତିକାନ୍ତକୁ ଅବାକ୍ କରିଦେଇ ଚାଲି-ଗଲା ବସୁଧା ।

ବସୁଧାର ଗମନ ପଥ ଆଡ଼େ ଚାହିଁଥାଏ ରତିକାନ୍ତ । କେତେ-ବେଳେ ଯେ ରମେଶ ଆସି ବସୁଧାର ପରିତ୍ୟକ୍ତ ଆସନରେ ବସି ପଡ଼ିଛି, ରତିକାନ୍ତ ଜାଣେନା । ମୁହଁ ଫେରାଇବା ମାତ୍ରେ ସେ ରମେଶକୁ ଦେଖି ପ୍ରଶ୍ନିଳ ଦୃଷ୍ଟିରେ ଚାହିଁଲା ତା' ଆଡ଼େ ।

ଖୁବ୍ ବୁଡ଼ ବୁଡ଼ ପାଣି ପିଉଛ ଫ୍ରେଣ୍ଡ୍···

Digitized by srujanika@gmail.com

ରମେଶର କଥାର ଭଙ୍ଗି ଓ ଅଧରର ଅର୍ଥପୂର୍ଣ୍ଣ ହସ ଦେଖି ରତିକାନ୍ତ ସର୍ବାଙ୍ଗରେ ଯେପରି ଅଗ୍ନି ଶଳାକାର ଦାହ ଅନୁଭବ କଲା । ନିଜକୁ ସଂଯତ କରି ନେଇ ସ୍ଥିର ଦୃଷ୍ଟିରେ ରମେଶକୁ ଦେଖିବାକୁ ଲାଗିଲା ।

ବୋଧହୁଏ ହତାଶ କରି ଦେଇଗଲା, ବ୍ରଦର୍ ।

ରତିକାନ୍ତ ନୀରବ ।

ମୁଁ ସମସ୍ତ ଖବର ରଖେ ବନ୍ଧୁ । ବସୁଧା ଉତ୍କଳୀୟ । ଅର୍ଥାତ୍ ମାତୁଳ ତାଙ୍କର ଆସିଛନ୍ତି ନେଇ ଯିବାକୁ ଆଜ ରାତିରେ । ସାଧାଆଇ ମିନ୍ ବାହାଘର···ଆଉ ମାତ୍ର ଗୋଟିଏ ଡଇକ୍ ରହିଲା । ତାପରେ ? ତୁମର ଅବସ୍ଥା କଥା ଚିନ୍ତାକରି ବଡ଼ ଦୁଃଖ ହେଉଛି ମନରେ । ନୋ ହୋପ୍ । ରାଜା ହୁଅ ବା ରାଜକୁମାର ହୁଅ, ତୁମକୁ ଆଜ ସେ କେୟାର କରିବ ନାହିଁ । ଏମାନଙ୍କର କି ହୃଦୟ ଟୋଲି କରୁଛି ଅଛି । ଦେ ଆର୍ ଅଲ୍ ହାର୍ଟଲେସ୍ ।

କହୁ କହୁ ଘରୁ ବାହାରିଲା ରମେଶ । ରତିକାନ୍ତ ଅନେକବେଳଯାଏ କମନ୍ ରୁମ୍ ଭିତରେ ବସି ଏକ ସମୟରେ ବାହାର ଆସିଲା । ସେତେବେଳକୁ କଲେଜ ଛୁଟି ହୋଇ ଯାଇଥାଏ । ହଷ୍ଟେଲକୁ ଆସି ନିଜର ରୁମ୍‌ର ଝରକା ବାଟେ ଚାହିଁଥାଏ ଲେଡ଼ିଜ୍ ହଷ୍ଟେଲ ଆଡ଼େ ।

ବସୁଧାର ବାହାଘର । ସେ ଲକ୍ଷ୍ୟ କରିଛି ବାହାଘର କଥାଟାକୁ ଉଚ୍ଚାରଣ କରିବାଲାଗି ତାର କେତେ କଷ୍ଟ ହେଉଥିଲା । ମାସକ ତଳେ ପ୍ରଥମ ସାକ୍ଷାତର ଦୃଶ୍ୟଟି ନାଚି ଉଠିଲା ଆଖି ଆଗରେ । ଯେଉଁ ନଦୀରେ ସ୍ନାନ କରୁଛି ବସୁଧା । ଗଛ ଆଢୁଆଳରେ ଥାଇ

Digitized by srujanika@gmail.com

ସ୍ନାନରତା ବସୁଧାର ଯୌବନପୁଷ୍ଟ ଅର୍ଦ୍ଧ ଉଲଗ୍ନ ଶରୀର ଆଡ଼େ କ ଲୋଲୁପ ଦୃଷ୍ଟିରେ ଚାହିଁଥିଲ ସେ । ପରିଚୟ ଜାଣିବା ଲାଗି ଛଟପଟ ହେଉଥାଏ ଖାଲି ।

ଶମିତାର ଦେଖା ପାଇଥିଲା ସେ । ଏକ ଅଦ୍ଭୁତ ପରିସ୍ଥିତି ଭିତରେ ପରିଚୟ ହୋଇ ତା' ସାଙ୍ଗରେ ସେ ଆସିଥିଲା ତାଙ୍କ ଘରକୁ । ସେ ପର୍ଯ୍ୟନ୍ତ ସେ ଜାଣେନା ବସୁଧା, ସେହି ଅବଗାହମାନା ପୂର୍ଣ୍ଣାଙ୍ଗୀ ଯୌବନମୟୀ ସହିତ ପରିଚୟ ହେବାକୁ ଯାଉଛି ।

ତା ପରେ ଷ୍ଟେସନରେ ପୁଣି ଦେଖା । ସେ ଏକ ଆଶ୍ଚର୍ଯ୍ୟ ଯୋଗାଯୋଗ ।

ଯୋଗେଶ୍ୱର ବାବୁ ରାଜାସାହେବଙ୍କର ବନ୍ଧୁ । ବସୁଧାକୁ ଦେଖି ସେ ଏପରିଭାବେ ଚାହିଁଥିଲେ କାହିଁକି ? ଯୋଗେଶ୍ୱରବାବୁଙ୍କୁ ଅଲଗା ଡାକିନେଇ କଣ ସେ ଏକାନ୍ତରରେ କହିଥିଲେ ?

ଲେଡ଼ିଜ୍ ହଷ୍ଟେଲରେ ସନ୍ଧ୍ୟା ନଇଁ ଆସୁଛି । ସମସ୍ତ ଝାପ୍ସା ଦେଖାଯାଉଛି ଆଖିକୁ । ଆଉ ଟିକଏ ପରେ ସବୁ ଘରେ ଆଲୁଅ ଜଳିବ, କିନ୍ତୁ କ ଲାଭ ହେବ ତାର । ବସୁଧା ସହିତ' କ ତାର ଦେଖାହେବ ? ହେଲେ ଆଉ ଲାଭ କଣ ? ସିଏତ' ଆଉ ବନ୍ଧଘର ବନ୍ଦ କରିଦେଇ ପାରେନା ।

ଲେଡ଼ିଜ୍ ହଷ୍ଟେଲର ପ୍ରତ୍ୟେକ ଘରେ ଆଲୁଅ ଜଳି ଉଠିଲା । ପ୍ରାର୍ଥନାର ସ୍ୱର ଶୁଭୁଛି । ବୋଧହୁଏ ପ୍ରାର୍ଥନା ସାରି ସିଏ ସାହାର ରୁମ୍‌କୁ ଆସିବେ ।

ଝରଣା ପାଖରୁ ଚାଲିଆସିଲା ରତିକାନ୍ତ । ତାର ମୁଣ୍ଡରେ ଏକ ଅଇଡ଼ିଆ ଆସିଛି । ଷ୍ଟେସନତ' ବେଶିଦୂର ନୁହେଁ । ନଅଟା

Digitized by srujanika@gmail.com

ପନ୍ଦରରେ ଗାଡ଼ି । ଷ୍ଟେସନରେ ଦେଖାକରି ସେ ବୁଝିବ ରମେଶ ଯାହା କହିଲା ତାହା ସତ କି ନୁହେଁ । ସେ କପରି ଜାଣିଲା ବସୁଧା ବଦ୍ଳି ହେବା ପାଇଁ କଲେଜ ଛାଡ଼ି ଯାଉଛି ।

ତାର ରୁମ୍ ମେଟ୍‌କୁ କହିଗଲା ପୂଝାରୀକୁ କହି ମିଲ୍ ଟା ତାର ବେଡ଼୍ ପାଖରେ ଆଣି ରଖିଥିବ, ଆସିଲେ ସେ ଖାଇବ । ଦଶଟା ମଧ୍ୟରେ ସିଏ ତ' ଫେରୁଛି ।

ଷ୍ଟେସନରେ ଅନେକ ସମୟ ଯାଏ ବୁଲାବୁଲି କଲା । ଓ୍ୱେଟିଂ ରୁମ୍, ବୁକ୍‌ଷ୍ଟଲ ଆଡ଼େ ବୁଲିଆସିଲା କିନ୍ତୁ ବସୁଧାକୁ ସେ ଦେଖି ପାରିଲା ନାହିଁ । ସେକେଣ୍ଡ୍ ବେଲ୍ ହୋଇଛି । ଅଳ୍ପ ସମୟ ପରେ ଗାଡ଼ି ତ' ଆସିବ, କିନ୍ତୁ ବସୁଧା କାହିଁ ।

ପୁଣି ଆସି ଠିଆହେଲା ସେ ବୁକ୍‌ଷ୍ଟଲ ପାଖରେ ।

ରବି !—

ଚମକି ପଡ଼ିଲା ରବିକାନ୍ତ । ଚକିତରେ ପଛକୁ ଫେରି ଚାହିଁଲା ସେ । ବସୁଧା ।

କଣ କରୁଛ ?—

ଖଣ୍ଡିଏ ପତ୍ରିକା କିଣୁଛି···

ନୀରବ ହସ ହସିଲା ବସୁଧା । କହିଲା—ମୁଁ ଜାଣେ ତୁମେ କଣ କିଣିବାକୁ ଆସିଛ । ଆସତ' ଦେଖି ।

ବସୁଧା ରବିକାନ୍ତର ହାତଧରି ଫାଙ୍କା ଜାଗାରେ ଆସି ଠିଆହେଲା ।

ମୁଁ ଜାଣେ ରବି, ତୁମେ ଆସିବ । ମୋ ମୁହଁରୁ ସବୁ କଥାତ ଶୁଣିନାହିଁ, ମନଟା ନିଶ୍ଚୟ ଛଟପଟ ହେଉଥିବ ଜାଣେ । ମୁଁ

Digitized by srujanika@gmail.com

ବାପାଙ୍କ ଚିଠିରୁ କିଛି ଜାଣି ନ ଥିଲି । ସେ ଖାଲି ଲେଖିଛନ୍ତି, ଖୁବ୍ ଜରୁରୀ—ମାମୁଁଙ୍କ ସାଙ୍ଗରେ ଚାଲିଆସିବୁ । ମାମୁଁ ମଧ୍ୟ କିଛି କଥା ଖୋଲି ନ ଥିଲେ । ମୋର ଆଶଙ୍କା ଅନ୍ୟଠି । ଏପରି ଚିଠିର ଅର୍ଥ ବୁଝିଲି, ବୋଧହୁଏ ବୋଉଙ୍କର ଦେହ ପା' କିଛି ଖରାପ ହୋଇଛି, ବାପା ଲୁଚାଉଛନ୍ତି । ମାମୁଁଙ୍କୁ ବହୁତ ରିକ୍ୱେଷ୍ଟ କଲାରୁ ସେ କହିଲେ, ମୋର ବିବାହର ସବୁ କୁଆଡ଼େ ଠିକ୍‌ଠାକ୍ ହୋଇଛି । କିନ୍ତୁ କେବେ କାହା ସାଙ୍ଗରେ ହେଉଛି ଏହାତ ଆଉ ପଚାରି ପାରେନା । ତଥାପି ତାଙ୍କ କଥାରୁ ଜାଣିପାରିଲି ସେ ମଧ୍ୟ ଭଲକରି ଜାଣନ୍ତି ନାହିଁ । ସକାଳେ ଆମ ଘରେ ପହଞ୍ଚିବା ସଙ୍ଗେ ସଙ୍ଗେ ବାପା ତାଙ୍କୁ ପଠାଇ ଦେଇଛନ୍ତି ମୋ ପାଖକୁ । କେବଳ ବିବାହ କଥା ସେ ଶୁଣିଛନ୍ତି ଓ ଶୁଣିଛନ୍ତି ଧନୀ ଘରେ ବିବାହର ବନ୍ଦୋବସ୍ତ ହୋଇଛି ।

ବସୁଧା !—

ଜାଣେ, ରବି ! ତୁମର ଦୁଃଖ କେଉଁଠି ବୁଝିଛି । କିନ୍ତୁ ମୋତେ ତୁମେ ଦୋଷ ଦିଅନା । ଆମେ ତୁମ ତୁଳନାରେ ଅତି ଦରିଦ୍ର । ତୁମର ପ୍ରଜା । ମୁଁ କେଉଁ ସାହସରେ ଉଚ୍ଚାରଣ କରିଥାନ୍ତି ? ତୁମକୁ କାହିଁକି ଆକୃଷ୍ଟ କରାଇ ମନ୍ଦାକିନୀ କରିଥାନ୍ତି ତୁମର । ସେଥିପାଇଁ ପାରତଃ ପକ୍ଷେ ମୁଁ ତୁମ ପାଖରୁ ଦୂରେଇ ରହୁଥିଲି । କିନ୍ତୁ—

ବସୁଧା ମୁହଁ ତଳକୁ କରି ଛିଡ଼ା ହେଲା ।

ରବିକାନ୍ତ କଣ କହିବାକୁ ଯାଇ କହିପାରିଲା ନାହିଁ । ବସୁଧାର କଣ୍ଠସ୍ୱର ଥରୁଥାଏ । କହିଲା—ଯାହା କହୁଥିଲି, ତୁମର

Digitized by srujanika@gmail.com

ଆମର କେତେ ନିକଟ ସମ୍ପର୍କ ଜାଣି ନ ଥିଲି । ଭାଗ୍ୟକୁ ରଜା-
ସାହେବ ଯେଦିନ ତାଙ୍କ ମୁହଁରେ ପ୍ରକାଶ କଲେ ସେତେବେଳେ,
ଗର୍ବରେ ମନ ମୋର ଫୁଲି ଉଠିଲା । ବେଶି ଖୁସି ହୋଇଥିଲି
ଶମିତା...ରଞ୍ଜ ! ଯେଉଁଠି ଥାଏନା ଜାହିଁକି, ଯେପରି ଅବସ୍ଥାରେ
ଥାଏ ତୁମକୁ ମନେ ପକାଉଥିବି ।

ଘୋଷକ ଘୋଷଣା କଲା ଅଧଘଣ୍ଟା ଲେଟ୍‌ରେ ଗାଡ଼ି ଆସୁଛି ।

ଏଇତ' ମାମୁଁ ଟିକେଟ ନେଇ ଆସିଲେଣି । ତୁମ ସାଙ୍ଗରେ
ପରିଚୟ କରାଇ ଦିଏ...

ଜଣେ ସ୍ୱାସ୍ଥ୍ୟବାନ ପୁରୁଷ ଆସି ଠିଆହେଲା ସେମାନଙ୍କର
ପାଖରେ । ରତିକାନ୍ତ ଆଡ଼େ କିଛି ସମୟ ଚାହିଁ କହିଲେ—
କୁମାର ! ଆପଣ ?—

ଲୋକଟିକୁ ନମସ୍କାର କରି ରତିକାନ୍ତ କହିଲା—ବସୁ ଆମ
କଲେଜରେ ପଢ଼େ ନରହରିବାବୁ ।...ବସୁଧା କିଛି ବୁଝି ନ ପାରି
ଉଭୟଙ୍କ ଆଡ଼େ ଚାହୁଁଥାଏ । ତାର ଉତ୍କଣ୍ଠା ଦୂର କଲେ ନରହରି
ବାବୁ—ରଜା ସାହେବଙ୍କର ମଙ୍ଗଳା ଗ୍ରାମର ତହସିଲଦାର ସେ ।
ଅନେକ ଦିନରୁ କାମ କରି ଆସୁଛନ୍ତି । ରଜା ସାହେବ ତାଙ୍କୁ ଖୁବ୍
ଭଲ ପାଆନ୍ତି ।...ତାପରେ କହିଲେ—ଆଚ୍ଛା ମା, ତୁମ୍ଭେମାନେ
କଥାବାର୍ତ୍ତା ହୁଅ, ମୁଁ ଟିକିଏ ଚା ଖାଇ ଆସେ ।...

ନରହରିବାବୁ ଚାଲିଗଲେ । ବସୁଧା ରତିକାନ୍ତର ମୁହଁ
ଆଡ଼େ ଚାହିଁଥାଏ ପଲକହୀନ ଦୃଷ୍ଟିରେ ।

କଣ ଦେଖୁଛ, ବସୁ ।—

ଗୋଟିଏ ଦୀର୍ଘ ନିଶ୍ୱାସ ଛାଡ଼ି ବସୁଧା କହିଲା—ବସୁ, ବସୁ...
ଆଉ କେତେ ଦିନ ପରେ ଆଉ ଜଣେ ଏହିପରି ଡ଼ାକିବ । କିନ୍ତୁ

Digitized by srujanika@gmail.com

ତାଙ୍କର ସେ ଡାକରେ କି ଏପରି ଆବେଗର ସ୍ୱର ଥିବ, ରତି !—

ରତିକାନ୍ତ ଦେଖି ପାରିଲା ବସୁଧାର ଆଖିରେ ଅଶ୍ରୁ । କହିଲା—ଆଉତ’ କିଛି କହିବାର ନାହିଁ, ବସୁ । ମଝିରେ ମଝିରେ ଯଦି ତୁମ ପାଖରୁ ଚିଠି ଖଣ୍ଡିଏ ପାଏ—

ରତି !

ବସୁ—

ଅନ୍ୟ ସ୍ଥାନ ହୋଇଥିଲେ କଣ ହୋଇଥାନ୍ତା କେଜାଣି, କିନ୍ତୁ ଖୋଲା ଏବଂ ଲୋକ ଗହଳି ଭିତରେ ତାହାତ’ ସମ୍ଭବ ନୁହେଁ । ତଥାପି ଟିକିଏ ଆଗେଇ ଆସୁଥିଲା ରତିକାନ୍ତ, ଠିକ୍ ସେତିକି ବେଳେ ନରହରିବାବୁ ଆସି କହିଲେ—କୁମାର ! ଆପଣଙ୍କର ଘଡ଼ିରେ କେତେଟା ବାଜିଛି କହିଲେ···

ରତିକାନ୍ତ ଘଡ଼ିରେ ନଜର ଦେଇ କହିଲା, ଦଶଟା ।

ତାହାହେଲେ ଗାଡ଼ି ବୋଧହୁଏ ଆସି ପହଞ୍ଚିବ···

ନରହରି ବାବୁଙ୍କର ଇଙ୍ଗିତ ବୁଝିପାରିଲେ ଉଭୟେ । ବସୁଧା କିନ୍ତୁ କହିଲା—ତୁମେ ଆମକୁ ଗାଡ଼ିରେ ବସାଇ ଦେଇ କି ଯାଇ ପାରିବ ନାହିଁ ? ତୁମର ତେଣେ ଡେରି ହୋଇଯିବ ବୋଲି ଭାବୁଛ ?—

ନା-ନା, ଗାଡ଼ି ଗିବାପରେ ମୁଁ ଯାଇପାରେ । ମୋର ତ’ କିଛି କାମ ନାହିଁ···

Digitized by srujanika@gmail.com

ଯାହା ହେଉ ଠିକ୍ ସେତିକବେଳେ ଘଣ୍ଟା ପଡ଼ିଲା, ଗାଡ଼ିଟା ମଧ୍ୟ ଆସି ପହଞ୍ଚିଲା । ରିଜର୍ଭ କ୍ୟାମେରା ଆଡ଼େ ଦୌଡ଼ିଲେ ନରହରି ବାବୁ । ବସୁଧାକୁ ନେଇ ଆସୁ ଆସୁ ରତିକାନ୍ତ ପଚାରିଲା— ବାହାଘର କଥା ରମେଶ କିପରି ଜାଣିଲା, ବସୁ—

ରମେଶ ? ବୋଧହୁଏ ମାମୁଁ ତାଙ୍କୁ କହିଛନ୍ତି । ସେ ମାମୁଁଙ୍କର ରିଲେଟିଭ୍ ବୋଲି ଶୁଣିଛି···

ସିଟ୍‌ରେ ଆସି ବସିଲା ବସୁଧା, ପାଖରେ ନରହରି ବାବୁ । ରତିକାନ୍ତ ବାହାର ଆଡ଼େ ଚାହିଁଥାଏ ।

ରତି ! ଚା' ଖାଇବ—ମୋର ଟିକିଏ ଖାଇବାକୁ ଇଚ୍ଛା ହେଉଛି, ଚାଲକୁ ଚାଲ···ଗାଡ଼ି ଛାଡ଼ିବାରେ ତ' ଡେରି ଅଛି— କହି ବସୁଧା ଉଠି ରତିକାନ୍ତର ହାତ ଧରି ତଳକୁ ଆସିଲା । ଚା' ନେଇ ଖାଉ ଖାଉ କହିଲା—ମୋର ଗୋଟିଏ ଅନୁରୋଧ ରକ୍ଷା କରିବ, ରତି ।

ହଁ, ବସୁ—କୁହ—

ଶୁଣିଲ ଆଜକୁ ଠିକ୍ ଏକ ସପ୍ତାହ ପରେ ବାହାଘର । ଅର୍ଥାତ୍ ଆସନ୍ତା ୨୨ ତାରିଖରେ । ମୋର ଅନୁରୋଧ, ତୁମେ ସେଦିନ ଉପସ୍ଥିତ ଯେପରି ଥିବ ଆମ ଘରେ । ମୁଁ ତୁମକୁ ନିମନ୍ତ୍ରଣ ଦେଲି ।

ମୋର ଆପତ୍ତି ନାହିଁ, ବସୁ ! କିନ୍ତୁ କେହି ଯଦି ମୋର ଉପସ୍ଥିତିକୁ ଭଲ ଭାବେ ନ ନିଅନ୍ତି । ତେବେ—

ମୁଁ ମେନେଜ୍ କରି ନେବି, ରତି—

Digitized by srujanika@gmail.com

କନ୍ତୁ କାହିଁକ, କୁହତ ? ଆଜ ମାୟା ବଢ଼ାଇ କ ଲଭ ? ଶେଷରେ ଦୁହିଁଙ୍କର କପାଳ ଫାଟିବା ସମ୍ଭବ ନୁହେଁ କ ?

ନା, ସେ ଭୟ ନାହିଁ । ମୁଁ—ମୁଁ...

ଆଜ କଛି କହ ପାରଲ ନାହିଁ ବସୁଧା । ରତିକାନ୍ତ ବୁଝି-ପାରଲ ବସୁଧାର ପେଟ ଭିତରୁ ଯେଉଁ କୋହ ଉଠୁଛି, କଥା ବାହାରବାର ଆଜ ସମ୍ଭବ ନୁହେଁ । ଗାଡ଼ି ମଧ୍ୟ ଚାଲବାକୁ ଆରମ୍ଭ କରଛି ।

ମୁଁ ଯିବ, ବସୁ—

ରତିକାନ୍ତର ହାତ ଛାଡ଼ି ଦେଇ ବସୁ ଆସି ଭିତରେ ବସିଲ । ଗାଡ଼ିର ହୋମ୍ ସିଗନାଲ ଅତିକ୍ରମ କରବା ପର୍ଯ୍ୟନ୍ତ ଚାହିଁଥାଏ ରତିକାନ୍ତ ।



# ତିନି

ରତ୍ନକାନ୍ତ ମଧ୍ୟ କମ୍ ଆଶ୍ଚର୍ଯ୍ୟ ହୋଇ ନାହିଁ । ରାଜାସାହେବ ଖାଲି ଚିଠି ଦେଇ ନାହାନ୍ତି । ଲୋକ ଆସିଛି ସାଙ୍ଗରେ ନେଇ ଯିବା ପାଇଁ । ହଠାତ୍ ଏଭଳି ଆହ୍ୱାନର କାରଣ ବୁଝି ପାରେନା ରତ୍ନକାନ୍ତ । ଯେଉଁ ଲୋକଟି ଆସିଥିଲା ସେ ମଧ୍ୟ କୌଣସି ସମ୍ବାଦ ଦେଇ ପାରିଲା ନାହିଁ ।

ଘରେ ନୁହେଁ, ପ୍ରତାପପୁରରେ ଯାଇ ପହଞ୍ଚିବାକୁ ହେବ ।

ପ୍ରତାପପୁର ! କାହିଁକି ? ରାଜାସାହେବଙ୍କର ଉଦ୍ଦେଶ୍ୟ ବୁଝିପାରେନା ରତ୍ନକାନ୍ତ । ତଥାପି ମନେ ମନେ ଖୁସି ହୁଏ । ବସୁଧାର ବିବାହରେ ଯୋଗ ଦେବା ତା' ପକ୍ଷରେ କୌଣସି ଅସୁବିଧା ରହିବ ନାହିଁ । ତାର ପ୍ରତିଶ୍ରୁତି ରକ୍ଷା କରି ପାରିବ । ଆଉ ମାତ୍ର ଦୁଇଦିନ ଅଛି ବସୁଧାର ବିବାହର ।

ପ୍ରତାପପୁରରେ ଯେତେବେଳେ ପହଞ୍ଚେ ରାତି ପାହି ଆସୁଥାଏ । ରାଜାସାହେବ ଭ୍ରମଣ ଯଷ୍ଟି ଖଣ୍ଡିକ ନେଇ ପ୍ରାତଃ ଭ୍ରମଣରେ ବାହାରୁଥିଲେ ବୋଧହୁଏ । ଏ ଅଭ୍ୟାସ ତାଙ୍କର କିଛି ନୂଆ ନୁହେଁ ।

ରତ୍ନକାନ୍ତକୁ ଦେଖି ରାଜାସାହେବ କହିଲେ—ମୁହଁ ହାତ ଧୋଇ ବିଶ୍ରାମ ନିଅ, ମୁଁ ଆସେ କଥାବାର୍ତ୍ତା ହେବା ।

ରାଜାସାହେବ ବାହାରିଲେ । ରତ୍ନକାନ୍ତ ସେଠାକାର ଗୁମାସ୍ତା ପ୍ରଭୃତିଙ୍କୁ ପଚାରି ବୁଝିଲେ, ସେମାନେ ମଧ୍ୟ କିଛି ଜାଣନ୍ତି ନାହିଁ । ବରଂ ସେମାନେ ଆଶ୍ଚର୍ଯ୍ୟ ହୋଇଛନ୍ତି ହଠାତ୍ ତାଙ୍କୁ ଦେଖି ।

Digitized by srujanika@gmail.com

ମୁହଁ ହାତ ଧୋଇ ବିଶ୍ରାମ ନେଲି ରତିକାନ୍ତ । ଅନିଦ୍ରା ହେତୁ ନିଦ ତାକୁ ଲାଗିଯାଇଥିଲା, ରାଜାସାହେବ କେତେବେଳେ ଫେରି ପୁଣି କେଉଁଆଡ଼େ ଚାଲି ଯାଇଛନ୍ତି ଜାଣେନା ସେ । ଭାବିଲା ବାହାରେ ଟିକିଏ ବୁଲି ଆସିଲେ ମନ୍ଦ ହୁଅନ୍ତା ନାହିଁ । ବସୁଧାର ଘର ଆଡ଼େ ଯିବାଟାତ' ଉଚିତ ହେବ ନାହିଁ । ଯଦି ଶମିତା ସାଙ୍ଗରେ ଦେଖାହୁଏ—

ବାହାରିବା ଲାଗି ପ୍ରସ୍ତୁତ ହେଉଛି, ରାଜାସାହେବ ଓ ଆଉ ଜଣେ ଭଦ୍ର ବ୍ୟକ୍ତି ଆସି ବୈଠକ ଖାନାରେ ବସିବାର ଦେଖି ସେ ମଧ୍ୟ ଭିତରକୁ ଆସୁଥିଲା, କିନ୍ତୁ ରାଜାସାହେବ ଗମ୍ଭୀର କଣ୍ଠରେ କହିଲେ—ତୁମେ ତୁମର ଘରେ ଯାଇ ବସ ।

ରତିକାନ୍ତ କିନ୍ତୁ ବୈଠକଖାନାର ପଛ ପଟକୁ ଆସି ସେମାନଙ୍କର କଥାବାର୍ତ୍ତା ଶୁଣିବା ପାଇଁ ଲୁଚି ଠିଆ ହେଲା । ଭଦ୍ର ଲୋକଟିକୁ ଦେଖି ତାର କୌତୁହଳ ମଧ୍ୟ ଯଥେଷ୍ଟ ହୋଇଥିଲା ।

ଆପଣ ଅଯଥା ଜିଦ୍ ଧରୁଛନ୍ତି, ରାଜାସାହେବ । ଯୋଗେଶ୍ୱର ବାବୁଙ୍କ ସହିତ ମୋର ଏଇ କଥା ହୋଇଥିଲା । ତାଙ୍କର ସାନ ଝିଅକୁ ମୁଁ ପୁତ୍ରବଧୂ କରି ନେବାକୁ ଚାହେଁ । କିନ୍ତୁ ଆପଣ ଚାହୁଁଛନ୍ତି ଯାନକୁ ପୁତ୍ରବଧୂ କରିବା ପାଇଁ । ଆପଣ ମୋ ଅପେକ୍ଷା ଯଥେଷ୍ଟ ଧନୀ ଓ ପ୍ରତିପତ୍ତିଶାଳୀ, କିନ୍ତୁ ଏ ଜିଦ୍ ଅନ୍ୟାୟ ଛଡ଼ା ମୁଁ ଆଉ କିଛି ମନେ କରି ପାରେନା ।

ଶୁଣନ୍ତୁ ମୋହନ ବାବୁ !—ରାଜା ସାହେବଙ୍କର କଣ୍ଠସ୍ୱର— ଝିଅ ଦୁଇଟିକୁ ମୁଁ ଦେଖିଛି । ସେମାନଙ୍କ ମଧ୍ୟରେ କିଏ ବେଶି ସୁନ୍ଦରୀ ସେ ବିବେଚନା ମୁଁ କରି ନାହିଁ । ଦିନେ ଷ୍ଟେସନରେ ମୁଁ

Digitized by srujanika@gmail.com

ଦେଖିଥିଲି ମୋର ପୁଅ ରତିକାନ୍ତ ସମ୍ଭବତ ଯୋଗେଶ୍ୱରଙ୍କର ସାନ ଝିଅଟିକୁ । ଏଥିରେ କି ବୁଝିବାରେ ବାକି ଅଛି ଯେ ଉଭୟେ ଉଭୟଙ୍କୁ ପାଇଲେ ସୁଖି ନ ହେବେ ? ସବୁ ଦିଗ ବିଚାର କରି ମୁଁ ପ୍ରସ୍ତାବ କରୁଛି ।—

ରତିକାନ୍ତର ଇଚ୍ଛା ହେଉଥିଲା ଚିତ୍କାର କରି ସେ କୁହେ—ନା—ନା, ଶମିତାକୁ ଆପଣ ଭୁଲ ବୁଝିଛନ୍ତି, ବାପା—ବସୁଧାକୁ ପାଇଲେ ମୁଁ ଖୁସି ହେବି—

କିନ୍ତୁ ରାଜାସାହେବ !—ଶୋଭନ ବାବୁ କହିଲେ—ମୁଁ ନିଜେ ଚିଠି ଗୁଡ଼ିକ ପଢ଼ିଛି, ଯଦିଓ ପ୍ରେମ ନିବେଦନର ଭାଷା ନ ଥିଲା—ତଥାପି ଉଭୟଙ୍କ ମଧ୍ୟରେ ଯେ କିଛି ଗୋଟାଏ ସମ୍ପର୍କ ନ ହୋଇଥିବ ଏହା ବିଶ୍ୱାସ କରନ୍ତୁ କିପରି । ମଦନର ମତ ମଧ୍ୟ ନେଇଛି । ଶମିତା ଝିଅଟିକୁ ପୁତ୍ରବଧୂ କରି ଆଣିଲେ ତାର ଆପତ୍ତି କରିବାର କିଛି ନାହିଁ ।

ରାଜାସାହେବ କହିଲେ—ମୁଁ ମୋର ପୁତ୍ରର ସୁଖତ' ଦେଖିବି ?

ତାହାହେଲେ କି ଆପଣ ରାଜ ନୁହନ୍ତି ? କାଲି ବଡ଼ାଘର—ଆଜି ଆପଣ ଜିଦ୍ ଧରି ବସୁଛନ୍ତି—

ହଠାତ୍ ଝଡ଼ ପରି ବୈଠକଖାନା ଭିତରେ ପ୍ରବେଶ କଲେ ଯୋଗେଶ୍ୱର ବାବୁ । କହିଲେ—ମୁଁ ଏବେ କଣ କରିବି କହନ୍ତୁତ' ରାଜାସାହେବ ! ଶୋଭନ ବାବୁ, ଆପଣ ମଧ୍ୟ କୁହନ୍ତୁ । ଶମିତା ତାର ବଡ଼ ଭଉଣୀ ଆଗରେ କହିଛି ମଦନକୁ ସେ ଅନେକ ଦିନରୁ କଥାଦେଇଛି ।

Digitized by srujanika@gmail.com

ରାଜା ସାହେବ କଣ କହିବାକୁ ଯାଉଥିଲେ, ଠିକ୍ ସେତିକି ବେଳେ ଜଣେ ପରେସ୍ତରକ ଆସି ଖଣ୍ଡିଏ ଚିରକୁଟ୍ ତାଙ୍କ ହାତକୁ ବଢ଼ାଇ ଦେଲା । ରାଜାସାହେବ ଚିରକୁଟ୍ ଖଣ୍ଡିକ ଉପରେ ଆଖି ବୁଲାଇ ନେଇ ଚେୟାରରୁ ଉଠିପଡ଼ି ଚିତ୍କାର କରି କହିଲେ—ରତିକୁ ଅଟକାଅ, କୁହ ମୁଁ ରାଜା—

ପରେସ୍ତରକ ଚାଲିଯିବା ପରେ ରାଜାସାହେବ ହସି ହସି କହିଲେ—ଆପଣଙ୍କର ଜୟ ହେଲା ଶୋଭନ ବାବୁ । ରତି ବସୁଧାକୁ ଭଲ ପାଏ ବୋଲି ଜାଣିନଥିଲି । ମୋର ସେବକକାର ଧାରଣା ଯେ ଭୁଲ, ଏ ଚିରକୁଟ୍ ଖଣ୍ଡିକ ନ ପାଇଥିଲେ ରତି ନିକଟରେ ଚିରଦିନ ଅପରାଧୀ ହୋଇ ରହିଥାନ୍ତି । ସେ ତାର ଜୀବନ ସଙ୍ଗିନୀ ବାଛି ନେଇଛି ।

ସମସ୍ତଙ୍କ ମୁହଁରେ ହସ ଦେଖାଗଲା ।



Digitized by srujanika@gmail.com

# ଚାରି

ରାତି...

କଣ କହୁଛ ବସୁଧା ?

ତୁମେ ମୋତେ ପାଇ ସୁଖୀ ହୋଇଛ ତ ?

ତୁମ କଥା କୁହ...

ତାହା କି ନ କହିଲେ ତୁମେ ବୁଝିପାରନା ?

ତୁମ ପ୍ରଶ୍ନର ଉତ୍ତର ଯଦି ଠିକ୍ ଏଇଆ ହୁଏ ?—

ଉଭୟେ ହସିଲେ । ସେଦିନ ବାସର-ଘରେ ଉଭୟେ କଥାବାର୍ତ୍ତା ହେଉଥିଲେ । ଅଳ୍ପ ସମୟ ଆଗରୁ ଅତିଥିମାନେ ବିଦାୟ ହୋଇ ଯାଇଥିଲେ । ଯେଉଁ ବନ୍ଧୁ ବାନ୍ଧବମାନେ ବିବାହ ଉପଲକ୍ଷେ ଆସିଥିଲେ ସେମାନେ ବସୁଧାକୁ ଜୋର କରି ଖୁଆଇ ପିଆଇ ଆଗରୁ ବାସର-ଘରେ ଛାଡ଼ି ଦେଇଥିଲେ । ରତିକାନ୍ତ ଉପରେ ଆତିଥ୍ୟ ସତ୍କାର ଦାୟିତ୍ୱ ଦେଇଥିଲେ ରାଜାସାହେବ । ତେଣୁ ସେ ସେଦିନଟା ସମ୍ପୂର୍ଣ୍ଣ କାର୍ଯ୍ୟବ୍ୟସ୍ତ ଥାଏ ।

ରମେଶକୁ ସେ ବିଶେଷ ଅନୁରୋଧ କରି ଆସିବାକୁ ଲେଖିଥିଲା । ସେଦିନର କମନ୍ ରୁମ୍‌ରେ ରମେଶ ଯେଉଁ ହୀନ ମନ୍ତବ୍ୟ ଗୁଡ଼ିକ କରିଥିଲା, ଗୋଟାଏ ପ୍ରତିଶୋଧର ଉଦ୍ଦେଶ୍ୟ ନେଇ ସେ ନିମନ୍ତ୍ରଣ କରିଥିଲା ରମେଶକୁ ।

ରତିକାନ୍ତର ଏକ ଦୂର ସମ୍ପର୍କୀୟ ଭଉଣୀ ଉପରେ ବସୁଧାର ସମସ୍ତ ଦାୟିତ୍ୱ ଦିଆ ହୋଇଥିଲା । ବସୁଧା ମଧ୍ୟ ଲତିକାକୁ ଗ୍ରହଣ କରିଥିଲା ବନ୍ଧୁଭାବରେ ।

Digitized by srujanika@gmail.com

ନବବଧୂର ଦର୍ଶନ ଲାଗି ରାଜାସାହେବ ଯେଉଁ କକ୍ଷଟିରେ ବସୁଧାର ବସିବାର ଆୟୋଜନ କରିଥିଲେ, ତାହା ସୁସଜ୍ଜିତ ହୋଇଥିଲା ନାନାଦି ଉପକରଣରେ । ଦୁଇଜଣ ରାଜ ପରିବାରର ଦାସୀ ନବବଧୂର ଆଦେଶ ପାଳନ ଲାଗି ମୁତୟନ ହୋଇଥିଲେ— ଲତିକା ତ' ପାଖେ ପାଖେ ଥାଏ ।

ସନ୍ଧ୍ୟା ପୂର୍ବରୁ ଲତିକା ନବବଧୂର ସାଜସଜ୍ଜା ଲାଗି ବ୍ୟସ୍ତ ହୋଇ ପଡ଼ିଲା । ବସୁଧାକୁ ସ୍ନାନାଦି ସାରିବା ନିମନ୍ତେ ନିର୍ଦ୍ଦେଶ ଦେଇ ପ୍ରସାଧନ ସାମଗ୍ରୀ ଗୁଡିକ ସଜାଇ ରଖିଲା ଡ୍ରେସିଂ ଟେବୁଲ ଉପରେ । ଅଳ୍ପ ସମୟ ପରେ ବସୁଧା ବାଥ୍‌ରୁମ୍‌ରୁ ଆସିଲାରୁ ବଡ଼ିଆ କାଠ ଆଲମାରି ସମ୍ମୁଖରେ ତାକୁ ବସାଇ ଦେଇ କବରୀ ରଚନାରେ ବ୍ୟସ୍ତ ହୋଇ ପଡିଲା ଲତିକା ।

ବସୁଧା ନିଜେ ନିଜେ କରି ପାରିବ ବୋଲି ଯେତେ କହିଲେ ହେଁ, ଲତିକା ତାର କଥାରେ କର୍ଣ୍ଣପାତ ନ କରି ଅତି ଯତ୍ନରେ କବରୀରେ ତରୁଣୀ ଚଳାଇବାକୁ ଲାଗିଲା । କବରୀ ରଚନା ପରେ ସ୍ୱର୍ଣ୍ଣ ନିର୍ମିତ ଏକ କବରୀ-ଭୂଷଣରେ କବରୀକୁ ସଜାଇ ବସୁଧାର ମୁଣ୍ଡଟିକୁ ଥରେ ଦୁଇଥର ଏପାଖ ସେପାଖ ଘୂରାଇ ହସି ହସି କହିଲା—ଇନ୍ଦ୍ରାଣୀକୁ ନିନ୍ଦା ଦେବ ଏ କବରୀ ଖଣ୍ଡିକ ।

ପ୍ରସାଧନ ଟେବୁଲ ଉପରେ ଦୃଷ୍ଟି ଥରେ ବୁଲାଇ ନେଲା ଲତିକା । ଆଗେ କେଉଁଟାକୁ ସେ ବ୍ୟବହାରରେ ଲଗାଇବ ତାହା ଚିନ୍ତା କରିନେଲା । । ଏକ ସମୟରେ ପ୍ରସାଧନ କାର୍ଯ୍ୟ ମଧ୍ୟ ଶେଷ ହୋଇଗଲା । ପରିଧାନ ବସ୍ତ୍ର ସମ୍ବନ୍ଧରେ ଚିନ୍ତା କରୁଥାଏ ଲତିକା, ଏହି ସମୟରେ ଜଣେ ପରିଚାରିକା ବଡ଼ିଆ ଗୋଟିଏ ଥାଳୀରେ ପରିଧାନର ବସ୍ତ୍ରାଦି ନେଇ ପହଞ୍ଚି କହିଲା—ଦିଦି !

Digitized by srujanika@gmail.com

ବୋଉ, ରାଣୀଙ୍କ ପାଇଁ ରାଜାବାହାଦୁର ଏସବୁ ପଠାଇଛନ୍ତି । ତାଙ୍କୁ ତୁମେ ପିନ୍ଧାଇ ଦଅ...

ଥାଳୀଟିକୁ ଟେବୁଲ ଉପରେ ରଖି ଦେଖିଲା ଲତିକା । ହାଲୁକା ଚମ୍ପାରଙ୍ଗର ଶାଢ଼ୀ ଏବଂ ଶାଢ଼ୀକୁ ମେଚ୍ କଲାଭଳି ବ୍ଲାଉଜ ଓ ଅନ୍ୟାନ୍ୟ ଉପକରଣ । କେବଳ ସେତିକି ନୁହେଁ ବହୁ ମୂଲ୍ୟବାନ୍ ଅଳଙ୍କାର ମଧ୍ୟ ଥାଳିଟିରେ ଆସିଛି ।

ଯାହାହେଉ, ଲତିକା ଗୋଟାଏ ମହା ଚିନ୍ତାରୁ ମୁକ୍ତି ପାଇଲା । କିପରି ପରିଧାନରେ ବସୁଧାକୁ ସେ ଅତିଥିମାନଙ୍କ ସମ୍ମୁଖକୁ ପଠାଇବ, ଏ ବିଷୟରେ ଚିନ୍ତା କରୁଥିଲା—ମାତ୍ର ରାଜାସାହେବ ତାହା ସମାଧାନ କରିଦେଲେ । ରାଜା-ସାହେବଙ୍କର ଦୃଷ୍ଟି ତାହା-ହେଲେ ସବୁଆଡ଼େ ଖେଳି ବୁଲୁଛି ।

ପରିଚାରିକା ପାଖରେ ଠିଆ ହୋଇଥିଲା, ଏଥର ଯିବାଲାଗି ଉଦ୍ୟତା ହୋଇ କହିଲା—ଦିଦି ! ରାଜାସାହେବ କହିଛନ୍ତି ତୁମର କାମ ଶେଷ ହୋଇଗଲେ ତାଙ୍କ ପାଖକୁ ଖବର ପଠାଇବ ।

ଆଚ୍ଛା, ମୁଁ ଖବର ଦେବି...

ପରିଚାରିକା ଚାଲିଗଲା । ଲତିକା ଏଥର ବସୁଧାକୁ ସଜାଇ-ବାକୁ ଲାଗିଲା । ବସୁଧାର କୌଣସି ଆପତ୍ତି ସେ ଶୁଣିଲା ନାହିଁ । ଅଳ୍ପ ସମୟ ମଧ୍ୟରେ ପ୍ରସାଧନାଦି କାର୍ଯ୍ୟ ଶେଷକରି ସେ ଖବର ଦେଲା ରାଜାସାହେବଙ୍କ ପାଖକୁ ।

ରାଜାସାହେବ ଯେପରି ଆଗରୁ ପ୍ରସ୍ତୁତ ହୋଇ ଥିଲେ । ସମ୍ବାଦ ପାଇବାମାତ୍ରେ ସେ ଆସିଲେ ପ୍ରସାଧନ କକ୍ଷକୁ । ତାଙ୍କୁ ଦେଖି ବସୁଧା ଚେୟାରରୁ ଉଠି ପ୍ରଣାମ କରିବାକୁ ଯାଉଥିଲା, ରାଜା-

Digitized by srujanika@gmail.com

ସାହେବ ବାଧାଦେଇ କହିଲେ—ଥାଉ ମା' ଥାଉ—ଆଗେ ମୋ କାମଟା ସାରିଦିଏ ।

କହୁ କହୁ ସାଙ୍ଗରେ ଆଣିଥିବା ଗୋଟିଏ ସୁଦୃଶ୍ୟ ବାକ୍ସକୁ ଟେବୁଲ ଉପରେ ରଖି ବାକ୍ସର ଢ଼ାଙ୍କୁଣି ଖୋଲିଲେ । ଗୋଟିଏ ଅତ୍ୟୁଜ୍ଜ୍ୱଳ ହୀରକ ଖଚିତ ହାର ବାକ୍ସ ମଧ୍ୟରୁ ବାହାର କରି ଲଳିତାର ହାତକୁ ଦେଇ କହିଲେ—ଲଳି, ବୋହୂ ମା'ଙ୍କୁ ପିନ୍ଧାଇ ଦେ'ତ...

ଲଳିତା ହାରଟିକୁ ନେଇ ବସୁଧାକୁ ପିନ୍ଧାଇ ଦେବାପରେ ବସୁଧା ଆସି ରାଜାସାହେବଙ୍କୁ ପ୍ରଣାମ କରି ନତ ମୁଖରେ ଛିଡ଼ା ହେଲା । ରାଜାସାହେବ ଆଶୀର୍ବାଦ କରି କହିଲେ—ମା' ଏଇଟି ହେଉଛି ରାଜବଂଶର ପ୍ରତୀକ । ଯେ ପର୍ଯ୍ୟନ୍ତ ରତ୍ନଟି ଘରେ ଥିବ, କୌଣସି ବିପଦ ଆପଦର ଆଶଙ୍କା ନାହିଁ । ତୁମର ଯେତେ ଅଭାବ ଅସୁବିଧା ଆସୁନା କାହିଁକି, ସୌଭାଗ୍ୟ-ରତ୍ନକୁ କେବେହେଲେ ହାତଛଡ଼ା କରିବ ନାହିଁ, ଏତିକି ମୋର ଅନୁରୋଧ ।...

ହଠାତ୍ ରାଜାସାହେବ କପରି ଅନ୍ୟମନସ୍କ ହୋଇଗଲେ । ଅନ୍ୟଆଡ଼େ ମୁହଁ ବୁଲାଇ କହିଲେ—ଆଜି ଯଦି ରଞ୍ଜିତର ମା' ଜୀବିତ ଥାନ୍ତା, ତୁମପରି ଲକ୍ଷ୍ମୀପ୍ରତିମା ବଧୂକୁ ଦେଖିଥିଲେ କି ଅପାର ଆନନ୍ଦ ଯେ ସେ ଅନୁଭବ କରନ୍ତା ତାହା ମୁଁ ପ୍ରକାଶ କରିପାରୁ ନାହିଁ । ଛୁଉ, ଗୋଟାଏ ଦିନର ଜର ଯେ ମହାକାଳର ଆଦେଶ ନେଇ ଆସିଥିଲା ଏହା ମୁଁ ଧାରଣା କରିପାରି ନାହିଁ, ନଚେତ୍ ଚେଷ୍ଟା କରିଥିଲେ ନିଶ୍ଚୟ ତାକୁ ବଞ୍ଚାଇ ପାରିଥାନ୍ତି । ଯାହାହେଉ, ଏ ସଂସାରରେ ତୁମେ ସୁଖ ଶାନ୍ତି ଭରିଦେବ ଏ ବିଶ୍ୱାସ ମୋର ଅଛି ।...

Digitized by srujanika@gmail.com

ବସୁଧା ଓ ଲତିକା ଲକ୍ଷ୍ୟ କଲେ ରାଜା ସାହେବଙ୍କର କଣ୍ଠସ୍ୱର କ୍ରମଶଃ ବାଷ୍ପରୁଦ୍ଧ ହୋଇ ଆସୁଛି । ଉଦ୍‌ଗତ ଅଶ୍ରୁକୁ ସେ ଯେପରି ସେମାନଙ୍କ ଠାରୁ ଲୁଚାଇବାକୁ ଚେଷ୍ଟା କରୁଛନ୍ତି । ବସୁଧା ପ୍ରାୟ ଚିତ୍କାର କରି ଉଠିଲା—ବାବା !

ଲତିକା ମଧ୍ୟ 'ମଉସା' ବୋଲି କହି ରାଜା ସାହେବଙ୍କର ସମ୍ମୁଖକୁ ଆସୁଥିଲା, କିନ୍ତୁ ରାଜାସାହେବ ସେମାନଙ୍କ ଆଡ଼କୁ ବୁଲି ପଡ଼ି ଲୁହ ପୋଛି ନେଇ କହିଲେ—ନା, ମା—ଏସବୁ କିଛି ନୁହେଁ । କ୍ଷଣିକର ଦୁର୍ବଳତା । ଅତୀତଟାକୁ ଭୁଲି ହୁଏନା, କେବେ କେବେ କପରି ଅସ୍ଥିର କରିପକାଏ ।

ଆପଣ ବସନ୍ତୁ, ବାବା ! ମୁଁ ଆପଣଙ୍କ ପାଇଁ ଟିକିଏ କଫି କରି ନେଇ ଆସେ···ବସୁଧା ମହଲ ଭିତରକୁ ଯାଉଥିବା ଦେଖି ରାଜାସାହେବ ବାଧାଦେଇ କହିଲେ—ଥାଉ ମା', ଖାଲି କଫି ହେଲେ ତ ଚଳିବ ନାହିଁ···ତୁମ ହାତରୁ ସବୁଦିନେ ତ' ମୋତେ ସବୁ ପ୍ରକାର ଖାଦ୍ୟ ଗ୍ରହଣ କରିବାକୁ ପଡ଼ିବ । ତା' ନ ହେଲେ ତୁମର ଏ ପୂଅ ବଞ୍ଚିବ କପରି ।

ରାଜାସାହେବ ଘଡ଼ି ଦେଖି ଲତିକାକୁ କହିଲେ—ମା' ! ତୁ ବୋହୂଙ୍କୁ ନେଇ ଗେଷ୍ଟ୍ ରୁମ୍ ଆଡ଼େ ଯା' । ଆମର ଅତିଥିମାନେ ଆସିଯିବେ । ଗେଷ୍ଟ୍ ରୁମ୍ ପାଖ ଘରଟା ସଜା ହୋଇଛି, ତୁ ତ' ଦେଖିଛୁ । ସେଇ ଘରେ ଯାଇ ତୁମ୍ଭେମାନେ ବସ । ରଣ୍ଡି ଚେଙ୍ଗେ କଣ କରୁଛି ଦେଖେ···

ରାଜାସାହେବ ଚାଲିଗଲେ । ଏହି ସମୟରେ ନହବତର ମଧୁର ଧ୍ୱନି ଶୁଣାଗଲା । ନବବଧୂର ଦେହଟା ଶିହରି ଉଠିଲା । କି ଗୋଟାଏ ନୂଆ ରୋମାଞ୍ଚ ଯେପରି ଖେଳିଗଲା ତାର ସର୍ବାଙ୍ଗରେ ।

Digitized by srujanika@gmail.com

ଲତିକା ଯେ ଏହା ଲକ୍ଷ୍ୟ ନ କରୁଛି ଏପର ନୁହେଁ, ବଦ୍ୟୁତ୍ଭର ଝିଲ୍ ଝିଲ୍ ସରୁ ହସଟିଏ ମିଳେଇ ଗଲା ତାର ଅଧର ପ୍ରାନ୍ତରୁ ।

ଦୁହେଁ ଆସି ନର୍ଦ୍ଦିଷ୍ଟ କକ୍ଷରେ ବସିଲେ । ପରିସ୍ତରିକା ଦୁହେଁ ଅତିଥିମାନଙ୍କୁ ପ୍ରାଥମିକ ସମ୍ଭାଷଣ ଜଣାଇବା ଲାଗି ଦୁଆର ପାଖରେ ଥାନ୍ତି ।

ଧୀରେ ଧୀରେ କୋଳାହଳ ବଢ଼ୁଥାଏ । ଏଥର ଅତିଥିମାନେ ଆସିବାକୁ ଲାଗିଲେଣି । ସଜ୍ଜିତ ଆଲୋକମାଳାର ଉଜ୍ଜ୍ୱଳତାରେ ସମଗ୍ର ରାଜପ୍ରାସାଦଟି ଇନ୍ଦ୍ରପୁରୀ ପରି ଦିଶୁଥାଏ । ବାହାରେ କାହାର ପଦଶବ୍ଦ ଶୁଣାଗଲା । ପରିସ୍ତରିକା ଦ୍ୱୟ ଅଭ୍ୟର୍ଥନାର ଭାଷା ଜଣାଇଲେ । ଲତିକା ବୁଝି ପାରି ବସୁଧାକୁ ମୃଦୁଭାବରେ ଚିମୁଟି ସଙ୍କେତ କଲା ଯେ, ବୋହୂକୁ ଦେଖିବା ଲାଗି ନମନ୍ତ୍ରିତଙ୍କ ମଧ୍ୟରୁ କେହି ଆସୁଛନ୍ତି; ଏହି ସଙ୍କେତର ଅର୍ଥ ଏହାହିଁ ।

ଅଭିଜାତ ପୋଷାକରେ ସଜ୍ଜିତ ଜଣେ ପ୍ରୌଢ଼ ଭଦ୍ରବ୍ୟକ୍ତିଙ୍କ ସହ ଅନ୍ୟ ଦୁଇଜଣ ମଧ୍ୟ-ବୟସ୍କ ବ୍ୟକ୍ତି ଘର ଭିତରକୁ ଆସିଲେ । ସେମାନଙ୍କୁ ଦେଖି ଲତିକା ଓ ବସୁଧା ଉଭୟେ ଠିଆହେଲେ ଏବଂ ସ୍ୱାଗତ ଜଣାଇଲା ଲତିକା । ଧାନ ଦୁବ ଥିବା ଥାଳିଟିକୁ ଆଗେଇ ଦେଲା ଆଗନ୍ତୁକମାନଙ୍କ ଆଡ଼କୁ । ସେମାନେ ଧାନ ଦୁବ ଦେଇ ଆଶୀର୍ବାଦ କଲେ ନବ-ବଧୂକୁ । ସାଙ୍ଗରେ ଆଣିଥିବା ପ୍ରେଜେଣ୍ଟ-ଟେସନ୍ ଥାଳ ଉପରେ ରଖିବା ମାତ୍ରେ ସେହି ଥାଳୀଟିକୁ ଆଗେଇ ଦେଲା ଲତିକା ବସୁଧା ଆଡ଼କୁ । ଉପହାର ଗୁଡ଼ିକ ନେଇ ମୁଣ୍ଡରେ ଛୁଆଁଇ ପାଖ ଟେବୁଲ ଉପରେ ରଖିଦେଇ ବସୁଧା ହାତଯୋଡ଼ି ସେମାନଙ୍କୁ ନମସ୍କାର କଲା ।

Digitized by srujanika@gmail.com

ସେମାନେ ଘରୁ ଯିବାପରେ ଜଣେ ଦୁଇଜଣ କରି ସମାନ୍ୟ ଏକସଙ୍ଗେ ଆଠଜଣ କରି ବନ୍ଧୁ ଅତିଥି ଆସିଲେ । ପ୍ରତ୍ୟେକଙ୍କୁ ଯଥାଯଥ ଭାବେ ସମ୍ମାନ ଦାନ ଓ ସେମାନଙ୍କର ଆଶୀର୍ବାଦ ଉପହାରରେ ଘରର ବାୟୁମଣ୍ଡଳ ଅନ୍ୟାକାର ଧାରଣ କଲା ।

ଏହି ସମୟରେ ଶ୍ଲଥ ପଦରେ ଆସିଲା ଜଣେ ଯୁବକ । ଲତିକାର ଅପରିଚିତ, କିନ୍ତୁ ବସୁଧା ତାକୁ ଦେଖିବା ମାତ୍ରେ ବିସ୍ମିତ କଣ୍ଠରେ କହିଲା—ଆପଣ !—ଆପଣ ଆସିଛନ୍ତି ରମେଶ ବାବୁ ! ବଡ଼ ଖୁସି ହେଲି ।—

ଲତିକା ରମେଶ ଆଡ଼କୁ ଅର୍ଘ୍ୟ ଥାଳିଟିକୁ ଆଗେଇ ଦେଉଥିଲା, କିନ୍ତୁ ରମେଶ ବାଧା ଦେଇ କହିଲା—ନା, ମୁଁ ଆଶୀର୍ବାଦ କରିବାର ଯୋଗ୍ୟତା ଲାଭ କରିନାହିଁ । ନୂଆ-ବୋହୂଙ୍କ ପାଖରୁ ଆଶୀର୍ବାଦ ନେବାକୁ ଆସିଛି । ମୋର ଯାହା ଦେଖା-ଦୋଷ ତୁମେ ତାହା କ୍ଷମା କର ନୂଆବୋହୂ ! ଆଉ ମୋର ଏହି କ୍ଷୁଦ୍ର ଉପହାରଟି ଭଲ ମନରେ ଗ୍ରହଣ କରି ମୋତେ ଧନ୍ୟ କର···

କହୁ କହୁ ରମେଶ ପକେଟରୁ ଗୋଟିଏ ଛୋଟ ବାକ୍ସ ବାହାର କରି, ନିଜେ ବାକ୍ସର ଡାଲା ଖୋଲି ରିଷ୍ଟୱ୍ୟାଚ୍‌ଟିକୁ ଦେଖାଇ ଟେବୁଲ ଉପରେ ରଖି ଦେଇ ପ୍ରଣାମ କରି ଚାଲି ଯାଉଥିଲା, ବସୁଧା ପଛରୁ ଡାକିଲା—ରମେଶ ବାବୁ ! ପ୍ଲିଜ୍ ଓ୍ୱାନ୍ ମିନିଟ୍ । ସହପାଠୀ ହିସାବରେ କେତେବେଳେ କଣ କହିଥିବ, ସେ ସବୁ ଭୁଲି ଯିବେ । ଆଉ ଗୋଟିଏ ଅନୁରୋଧ, ଆପଣ ପ୍ରୀତି-ଭୋଜନରେ ଯୋଗ ନ ଦେଇ ଖାଲି ମୁହଁରେ ଫେରିଯିବେ ନାହିଁ ।···

Digitized by srujanika@gmail.com

ଆପଣ ବ୍ୟସ୍ତ ହେବେ ନାହିଁ । ଅତୀତ, ଅତୀତ ହୋଇଥାଉ । ବର୍ତ୍ତମାନ ଆମେ ଏକ ନୂଆ ଜୀବନ ପଥରେ ଗତି କଲୁ । ଆପଣ ମୋର ଗୁରୁଜନ ହେଲେ, ଏଣିକି ଭବିଷ୍ୟତରେ କେବେ ଦେଖା ହେଲେ ଆପଣଙ୍କ ମୁହଁରୁ "ଆପଣ" ଶବ୍ଦ ଯେପରି ନ ଶୁଣେ । ଆପଣ ଯାହା ଅନୁରୋଧ କଲେ ତାହା ନିଶ୍ଚୟ ପାଳନ କରିବି । ଭାଇଙ୍କର ଏ ଶୁଭ ଅନୁଷ୍ଠାନରେ ମୁହଁ ମିଠା କରି ଯିବ ନାହିଁ, ଏହା କି ହୋଇପାରେ ? ଜୋର୍ କରି ଆଦାୟ କରିବାର ଅଧିକାର ଯେତେବେଳେ ପାଇଛି···ଆସୁଛି ନୂଆ ବୌ, ନମସ୍କାର···

ରମେଶ ଚାଲିଗଲା । ବସୁଧାର ମନଟା ବଡ଼ ଘାଣ୍ଟି ଚକଟି ହେଲା । କଲେଜର ସେହି ସୁନେଲି ଦିନ ଗୁଡ଼ିକର କଥା ମନେ ପଡ଼ି ଅତୀତର ଛବି ଗୁଡ଼ାକ ନାଚି ଉଠିଲା ଆଖି ଆଗରେ ।

ଲତିକା ପଚାରିଲା—ତୁମର ସହପାଠୀ ବୋଲି କହିଲେ ନା ?

ବସୁଧାର ଆଖି କୋଣରେ ଲୁହ ବୋଧହୁଏ ଜମି ଆସିଥିଲା । ଲୁଚାଇବାକୁ ଚେଷ୍ଟା କଲେ ବି ଧରା ପଡ଼ିଗଲା ଲତିକା ପାଖରେ । ଲତିକା ବୁଝି ପାରିଲା, ଅତୀତ ବି ତାର ଏହିପରି ଏକ ରଙ୍ଗ-ବୋଳା ହବା-ସ୍ୱପ୍ନ ଥିଲା । ନାନାପ୍ରକାର ଖେଳ, ଥିଏଟର, ଡିବେଟିଂ, କୌତୁକତାର ଆଦାନ ପ୍ରଦାନ—ସେ ଦିନ ତ' ସେ ପଛରେ ପକାଇ ଆସିଛି ଅନ୍ୟ ଏକ ପରିବାର ମଧ୍ୟକୁ । ପ୍ରଥମେ ପ୍ରଥମେ ତାର ବି କିଣି କମ୍ କଷ୍ଟ ହୋଇଥିଲା । ଏବେ କିନ୍ତୁ ନିଜକୁ ସେ ସମାଳି ନେଇଛି । ବାପଘର, ଶ୍ୱଶୁର-ଘରର ପାର୍ଥକ୍ୟ-ତାକୁ ସେ ବୁଝିପାରିଛି ଏବେ ।

ବସୁଧା ପ୍ରତି ସହାନୁଭୂତିରେ ହୃଦୟ ତାର ଭରିଗଲା । କିଛି କହିବାକୁ ଯାଉଥିଲା, ଏହି ସମୟରେ ପରିଚାରିକା ଆସି ସମ୍ବାଦ ଦେଲା ରାଜାସାହେବ ଉଭୟଙ୍କୁ ଡାକୁଛନ୍ତି ।

Digitized by srujanika@gmail.com

ଘରଟାକୁ ଭିତରଆଡୁ ବନ୍ଦ କରିଦେଇ ବସୁଧାକୁ ସାଙ୍ଗରେ ନେଇ ଭିତରବାଟେ ମହଲକୁ ଆସୁ ଆସୁ ସେମାନେ ଦେଖିଲେ ରାଜା-ସାହେବ ନିଜେ ସାମ୍‌ନା ଆଡୁ ଆସୁଛନ୍ତି । ଉଭୟେ ଥମକି ଛିଡ଼ା ହୋଇଗଲେ ।

ରାଜାସାହେବ ହସି ହସି କହିଲେ—ଏଇ ଘରକୁ ମୋ ସାଙ୍ଗରେ ଆସ ମା'-ମାନେ । ରାତି ଅନେକ ହୋଇଛି । ତୁମମାନଙ୍କୁ ନିଶ୍ଚୟ ଭୋକ କରିବଣି ।...

ଲଜ୍ଜିତା ଗୃହିଣୀ ବସୁଧା ଆଡ଼େ । ଆଗେ ଆଗେ ଚାଲିଛନ୍ତି ରାଜାସାହେବ । ଡାଇନିଂ ହଲ୍‌ର ଟେବୁଲ ଉପରେ ତିନିଜଣଙ୍କ ପାଇଁ ଖାଦ୍ୟବସ୍ତୁ ସଜଡ଼ା ହୋଇ ରହିଛି । ରାଜାସାହେବ ଗୋଟିଏ ପାଖରେ ବସିଲେ, ସାମ୍‌ନାରେ ବସିଲେ ବସୁଧା ଲଜ୍ଜିତା ।

ବସ, ମା—ଖାଇବାକୁ ଆରମ୍ଭ କର ।...କହି ସୁକାନ୍ତ ଚୌଧୁରୀ ଖାଇବାକୁ ଆରମ୍ଭ କଲେ । ବସୁଧା ପ୍ଲେଟ ଗୁଡ଼ିକ ଆଡ଼େ ଚାହିଁଥାଏ । ଏ କଣ ! ଯେଉଁ ଖାଦ୍ୟ ଗୁଡ଼ିକ ତାର ଅତି ପ୍ରିୟ ସେ ଗୁଡ଼ିକ ଅନ୍ୟାନ୍ୟ ଖାଦ୍ୟ ସହିତ ବଢ଼ାଯାଇଛି ।

ମନେ ମନେ ଭାବେ ବସୁଧା, ରାଜାସାହେବ କି ତାଙ୍କର ଘରୁ ତା' ସମ୍ବନ୍ଧରେ ସମସ୍ତ ଖବର ସଂଗ୍ରହ କରିସାରିଛନ୍ତି । ଏପରି କି ତାର ପ୍ରିୟ ଖାଦ୍ୟ ଗୁଡ଼ିକର କଥା ମଧ୍ୟ ସେ ମନେ ରଖିଛନ୍ତି ।

ବୋଧହୁଏ ମା' ବୋଧହୁଏ ଲଜ୍ଜା କରୁଛି, ଲଜ୍ଜା ! ...ଖାଅ ମା' ପୁଅ ପାଖରେ ମା'ର ଲଜ୍ଜା କଣ ?—

ଉଭୟେ ଖାଇବାକୁ ବସିଲେ । ଏକ ସମୟରେ ରାଜା-ସାହେବ ଖିଆପିଆ ଶେଷ କରି କହିଲେ—ତୁମ୍ଭେମାନେ ଖାଅ, ମୋର ଶେଷ ହୋଇଛି ।

Digitized by srujanika@gmail.com

ରଜାସାହେବ କିଛି ଦୂର ଯାଇ ଇଙ୍ଗିତରେ ଲଡ଼କାକୁ ପାଖକୁ ଆସିବାକୁ କହି, ଲଡ଼କା ଆସିଲାରୁ ତାକୁ ଅତି ନମ୍ର ସ୍ୱରରେ କଣ କହି ଚାଲିଗଲେ । ଲଡ଼କା ପୁଣି ବସୁଧା ପାଖକୁ ଫେରିଆସି କହିଲା—ଚଞ୍ଚଳ ଖାଇନିଅ, ରାତି ଅନେକ ହୋଇଛି···କହି ଲଡ଼କା! ଆଡ଼ ଚକ୍ଷୁରେ ଚାହିଁ ମୃଦୁ ହସି ମୁହଁ ବୁଲାଇ ନେଲା ।

ଇଙ୍ଗିତଟା ବୁଝି ପାରିଲା ବସୁଧା । ରଜାସାହେବ କେଉଁ କଥା ଲଡ଼କାକୁ ସୂଚାଇ ଦେଇଗଲେ ଏହା ସେ ବୁଝିପାରିଲା । ଲଜ୍ଜାରେ ଆରକ୍ତ ହୋଇ ଆସିଲା ମୁହଁଟି ।

ସେମାନଙ୍କର ଖିଆପିଆ ସାରିବା ପରେ ଲଡ଼କା ଆସିଲା ତାକୁ ନେଇ ଶୟନ କକ୍ଷକୁ । ଘରର ସାଜସଜା ଦେଖି ବିସ୍ମିତ ହେଲା ବସୁଧା । ହାତୀଦାନ୍ତର ପଲଙ୍କ ଉପରେ ଶୁଭ୍ରଶଯ୍ୟା । ଉପାଧାନ ଉପରେ ସୁନ୍ଦର କାରୁକାର୍ଯ୍ୟ କରି ବର୍ଣ୍ଣାଳୀ କଭର ।

ପଲଙ୍କର ଚାରିପାଖରେ ସୁଗନ୍ଧି ପୁଷ୍ପର ବିଚିତ୍ର ମାଳା ଓ ଗୁଚ୍ଛ । ସୌରଭରେ ଘରଟି ମହକ ଉଠୁଥାଏ । ଖଟର ମୁଣ୍ଡପାଖରେ କାନ୍ଥ ଦେହରେ ଝୁଲୁଥାଏ ଖଣ୍ଡିଏ ତୈଳ ଚିତ୍ର । ଚିତ୍ରଟି ଗୋଟିଏ ଯୁବତୀ ନାରୀର । ଫ୍ରେମର ଚାରିପଟେ ପୁଷ୍ପମାଳା ଝୁଲୁଥାଏ । ସେହି ନାରୀର ଅଧରରେ ହସ, ଅପରୂପା ନାରୀର ମୁହଁରେ ସେହି ହସଟି ବେଶ୍ ସୁନ୍ଦର ଦେଖାଯାଉଥାଏ ।

ଚିତ୍ରଟିର ଗଳାକୁ ଚାହିଁ ଚମକି ପଡ଼ିଲା ବସୁଧା । ଫେରି ଚାହିଁଲା ନିଜର ଗଳା ଆଡ଼େ । ଯେଉଁ ଚନ୍ଦ୍ରହାରଟି ସେ ଗଳାରେ ପିନ୍ଧିଛି ଅନୁରୂପ ଗୋଟିଏ ହାର ସେହି ଚିତ୍ରଟିରେ ଥିଲା ନାରୀର ଗଳାରେ । ବୁଝିବାରେ ଅସୁବିଧା ହେଲା ନାହିଁ ବସୁଧାର ଯେ, ଏହା ହେଉଛି ସ୍ୱର୍ଗୀୟା ରାଣୀସାହେବାଙ୍କର ଚିତ୍ର । ଗୋଟିଏ ଧୂପାଧାରରୁ ଧୂପ ରେଖା ସର୍ପିଳ ଆକାରରେ ଅଙ୍କେଇ ବଙ୍କେଇ ଚିତ୍ରଟିର ପାଖ ଦେଇ ଉପରକୁ ଉଠି ଯାଉଛି ।

Digitized by srujanika@gmail.com

ବସୁଧା ଭକ୍ତିଭରେ ପ୍ରଣାମ କଲା ତେଜନେବଣିକୁ । ତାର ମନେ ହେଲା, ଶବାଙ୍କିତ ମୁଖର ଅଧରଟି ଯେପରି ଟିକଏ ଫାଙ୍କ ହୋଇଗଲା । ନିଜର ଅଜାଣତରେ ବସୁଧାର କଣ୍ଠରୁ ବାହାରି ଆସିଲା—ଆଶୀର୍ବାଦ କର, ମୁଁ ଯେପରି ତୁମ ପରି ଭାଗ୍ୟବତୀ ହୁଏ ।

ହଠାତ୍ ଖିଆଲ ହେଲାରୁ ତାର ମନେହେଲା, କାହାକୁ ସେ ଏ କଥା କହିଲା । କେହି କି ତା'-କଥା ଶୁଣି ପାରିଛନ୍ତି ? ଶୁଣିଥିଲେ କଣ ତାକୁ ମନେ କରିବେ ? ଦୁଆରଟା ଖୋଲା ଅଛି, ଲୁଚକା ଯଦି ଆଡ଼ୁଆଳରେ ଥାଇ ତାର କ୍ରିୟା କଳାପ ଦେଖୁଥିବ ତାହାହେଲେ କଣ ସେ ମନରେ ଭାବିବ ।

ଧୀର ପଦରେ ଆସି ଦୁଆର ମୁହଁ ପାଖରେ ଛିଡ଼ା ହୋଇ ବାହାର ଆଡ଼େ ଚାହିଁଲା । ନା, କେହି କୁଆଡ଼େ ନାହିଁ । ଦୁଆରଟିକୁ ଆଉଜାଇ ଦେଇ ଯେମିତି ଉପରେ ଆସି ବସିଲା ଏଥର ।

କେତେ କଥା ମନେ ପଡ଼ିଲା । ଆଜି ଶର୍ମିଷ୍ଠାର ମଧ୍ୟ ମଧୁ-ରାତ୍ର । କିପରି ସେ ସେଠାରେ ଆଦର ଯତ୍ନ ପାଉଛି ? ତେବେ, ରୂପରେ ସେ ସମସ୍ତଙ୍କ ହୃଦୟକୁ ଜୟ କରି ପାରିବ । ମଦନବାବୁ ତାର ପୂର୍ବ ପରିଚିତ । ଶୁଣିଛି ମଦନର ପିତା ଶୋଭନବାବୁ ବଡ଼ ବ୍ୟବସାୟୀ । ସେ ମଧ୍ୟ ଏକମାତ୍ର ସନ୍ତାନ ଶୋଭନବାବୁଙ୍କର । ମଦନକୁ ସେ ଦେଖିଛି । ଅତି ଅମାୟିକ ଓ ଭଦ୍ର । ମାଉସୀଙ୍କ ଝିଅର ବାହାଘରକୁ ସେମାନେ ଯେତେବେଳେ ଯାଇଥିଲେ ମଦନ ସହିତ ଶର୍ମିଷ୍ଠାର ବ୍ୟବହାର ଦେଖି ସନ୍ଦେହ ମନରେ ଜାତ ହୋଇଥିଲା—କିନ୍ତୁ ତାହା ଏତେ ଶୀଘ୍ର ବାସ୍ତବରେ ପରିଣତ ହେବ ଏପରି ଧାରଣା ସେ ଆଦୌ କରି ପାରି ନ ଥିଲା । ଶର୍ମିଷ୍ଠା ଭଲ ଝିଅ ନିଶ୍ଚୟ ସେମାନଙ୍କର ସଂସାରଟାକୁ ଶାନ୍ତିରେ ଚଳାଇ ପାରିବ ।

Digitized by srujanika@gmail.com

ଦୁଆର ଫାଙ୍କ ହେବା ଶବ୍ଦ ଶୁଣି ଦୁଆର ଆଡ଼େ ଚାହିଁଲା ବସୁଧା । ରତିକାନ୍ତ ଆସୁଛି । କପରି କ୍ଲାନ୍ତ ଥିଲା ପରି ମନେ ହେଉଛି । ହେବାର ତ କଥା, ସେ ଶୁଣିଛି, ବଜାପାହେବ ସାର ଦିନଟା ଆଜି ତାକୁ ଏକ ଧାପ୍ପିଭିତ୍ତି ପୂର୍ଣ୍ଣ କାର୍ଯ୍ୟର ଭାର ଅର୍ପଣ କରିଥିଲେ ବୋଲି ।

ରତିକାନ୍ତ ଭିତରକୁ ଆସି ବସୁଧାର ପାଖରେ ବସିଲା । ବସୁଧା ତାର ଆପାଦ ମସ୍ତକ ଲକ୍ଷ୍ୟ କରି କହିଲା—ବଡ଼ କ୍ଲାନ୍ତ ହୋଇ ପଡ଼ିଛ, ରତି !—

ତୁମେ ବି ତ କ୍ଲାନ୍ତ···ହସି ହସି କହିଲା ରତିକାନ୍ତ···ମୁଁ ସବୁ ଶୁଣିଛି । ଅତିଥିମାନେ ତୁମକୁ ବଡ଼ ବିରକ୍ତ କରିଛନ୍ତି । ଆଚ୍ଛା, ରମେଶ ତୁମକୁ କି ଉପହାର ଦେଇଛି କୁହତ···

ସୁନ୍ଦର ଚୋଟାଏ ଲେଡ଼ିଜ୍ ଓ୍ୟାଚ୍ । କିନ୍ତୁ ରମେଶର ପରିବର୍ତ୍ତନ—

ମୁଁ ଜାଣେ । ସେଥିପାଇଁ ତାକୁ ମୁଁ ଡକାଇ ପଠାଇଥିଲି । ଯାହାହେଉ ଚରିତ୍ରଟା ନିଜେ ସେ ସଂଶୋଧନ କରିନେଇଛି, ଏହାହିଁ ସୁଖର କଥା । ସେ କଣ କରିଛି ଜାଣ ? ହଠାତ୍ ଆସି ମୋର ଗୋଡ଼ ଦୁଇଟାକୁ ଧରି ପକାଇ ପ୍ରାୟ କାନ୍ଦ କାନ୍ଦ ହୋଇ କହିଲା—ମୋର ସେଦିନର କଥାରେ ତୁମେ ନିଶ୍ଚୟ ରାଗ କରିଥିବ ଭାଇ ! ସାନ ଭାଇର ଅପରାଧ କ୍ଷମା କରି ମୋର ଚପଳତା ମାର୍ଜନା କର । କରନ୍ତି ଆଉ କଣ, ତାକୁ ସାନ୍ତ୍ୱନା ଦେଇ ଶାନ୍ତ କଲି । ସେ ପୁଣି ତୁମ ପାଖକୁ କ୍ଷମା ମାଗିବାକୁ ଯାଉଛି ବୋଲି କହିଲା । ଆଉ କି କିଛି କହୁଥିଲା ?

ବସୁଧା ସମସ୍ତ କଥା କହିଗଲା । ରତିକାନ୍ତ ହସିଲା । ରାଜବାଟୀର ପିଟା ଘଣ୍ଟା ଘୋଷଣା କଲା ରାତି ଦୁଇଟା···

Digitized by srujanika@gmail.com

ବାସର-ଶଯ୍ୟା ଅତି ସଫଳ ହୋଇଥିଲା ସେମାନଙ୍କର ।

…ରତି !

…କଣ କହୁଛ, ବସୁଧା ?

…ତୁମେ ମୋତେ ପାଇ ସୁଖୀ ହୋଇଛତ ?

…ତୁମ କଥା କୁହ ।

…ତାହା କ'ଣ ନ କହିଲେ ତୁମେ ବୁଝି ପାରନା ?

…ତୁମ ପ୍ରଶ୍ନର ଉତ୍ତର ସବୁ ଠିକ୍ ଏଇଆ ହୁଏ ?

ତା ପରେ କେତେ ପ୍ରଶ୍ନ, କେତେ ଉତ୍ତର । ପ୍ରଶ୍ନୋତ୍ତର ଗୁଡ଼ିକ ବୋଧହୁଏ ଗୋଟିଏ ରାତି ଭିତରେ ଶେଷ ହୋଇ ପାରେନା । କେତେ ଦିନର ସଞ୍ଚିତ କଥା, ‹ଡେ଼ ଶୀଘ୍ର ଶେଷର' ହେବାର କଥା ନୁହେଁ ।

ପିଠା-ଘଣ୍ଟାର ବିରାମ ନାହିଁ—ତିନି, ଚାରି, ପାଞ୍ଚ…ସେ ଘୋଷଣା କରି ଚାଲିଛି । କବାଟଟା ଠିକଏ ଖଡ଼ ଖଡ଼ ହେବାର ଶୁଣାଗଲା ।

ଶୁଣୁଛ, ଏ ଶବ୍ଦ କଣ କହିଲ ?—ପଚାରିଲା ବସୁଧା ।

କଣ ଆଉ ହବ…? ନିଦ୍ରାସକ୍ତ କଣ୍ଠରେ କହିଲା ରତିକାନ୍ତ । ଦୁଷ୍ଟ ଲତିକା ହୋଇଥିବ । ଆସିବାବେଳେ କହିଥିଲି, ଠିକ ପାଞ୍ଚଟା ବେଳେ ନୂଆବୋଉଙ୍କୁ ଉଠାଇଦେବ, ଡେରି ହେଲେ ମୁଁ ଗୋଳମାଳ କରିବି ।—

ରତିକାନ୍ତ କଡ଼ ଲେଉଟାଇ ଶୋଇଲା । ବସୁଧା କହିଲା—ତୁମେ ମୋତେ ଆଗରୁ ସେ କଥା କହିନାହଁ କାହିଁକ ? ଛି, ଛି—କି ଲଜ୍ୟା ।—



Digitized by srujanika@gmail.com

ତେବେ ଠକଖାନାରେ ବସିଥିଲେ ରଜାସାହେବ ଓ ରତିକାନ୍ତ ।

ରଜାସାହେବ ସୁଧାକାନ୍ତ ଚୌଧୁରୀ ଆରାମ ଚେୟାରରେ ବସି ତମାଖୁ ସେବନ କରୁଥିଲେ, ସାମନା ଚେୟାରରେ ବସି ରତିକାନ୍ତ ଅନ୍ୟମନସ୍କ ଭାବେ ଖଣ୍ଡିଏ ଖବର କାଗଜ ଉପରେ ଆଖି ବୁଲାଉଥାଏ ।

ଦୁଇ-ତିନିଥର ତମାଖୁ ଟାଣି ରଜାସାହେବ କହିଲେ—ମୁଁ କାଲି ରାତିରେ ଖୁବ୍ ଚିନ୍ତା କରି ଦେଖିଛି ରତି, ଆଉ ତୁମର ବେଶୀଦୂର ଆଗେଇବାର ଉଚିତ ନୁହେଁ । ଅବଶ୍ୟ ତୁମ୍ଭମାନଙ୍କର ଏ ବର୍ତ୍ତମାନ ପଢ଼ାପଢ଼ି କଲେ ମାଷ୍ଟର ଡିଗ୍ରୀ ଲାଭ କରିଥାନ୍ତ, କିନ୍ତୁ ସେଥିରେ ଆମର କିଛି ଲାଭନାହିଁ । ଦିନେ-ନା-ଦିନେ ତୁମକୁତ ଜମିଦାରୀର କାଗଜ ପତ୍ର ନେଇ ବସିବାକୁ ହେବ । ଏଥିରେତ’ ପଢ଼ା ପଢ଼ି କମ୍ବା ଡ଼ିଗ୍ରୀର ଦରକାର ହୁଏନା । ମୋର ନିଜ କଥାତ’ ତୁମେ ଜାଣିଛ ।

ଏହି ସମୟରେ ବସୁଧା ଆସିଲା, ପଛରେ କଫି କପ୍ ଟ୍ରେ-ରେ ନେଇ ଜଣେ ପରିଚାରିକା । ଟ୍ରେ-ରୁ କଫି କପ୍ ଗୁଡ଼ିକ ନେଇ ଆଗେ ରଜାସାହେବଙ୍କ ଆଡ଼କୁ ଗୋଟିଏ କପ୍ ଆଗେଇ ଦେଇ ଅନ୍ୟଟି ରତିକାନ୍ତର ସାମ୍ନାରେ ରଖି ଠିଆ ହେଲା ।

ବସ ମା’ ବସ ।···ରଜାସାହେବ ମୃଦୁ କଣ୍ଠରେ କହିଲେ ।

ଧୀରଭାବେ ରତିକାନ୍ତର ପାଖ ଚେୟାରରେ ବସିଲା ବସୁଧା । ପରିଚାରିକା ଅନ୍ୟ କପ୍ ଟିକୁ ରଖିଲା ବସୁଧାର ସାମନାରେ । ସେ ଚାଲି ଯିବାପରେ ରଜାସାହେବ କଫି ସ୍ପର୍ଶ କରୁ କରୁ କହିଲେ—ତୁମର ମତ କଣ, ବୋହୂ-ମା ! ତୁମ୍ଭମାନଙ୍କର ଆଉ

Digitized by srujanika@gmail.com

ପଢ଼ିବାର କିଛି ଦରକାର ଅଛି ବୋଲି ମୁଁ ମନେ କରୁନାହିଁ। ବୁଝି ତ ପାରୁଛ, ମୋର ଆଉ କେତେଦିନ। ରତି ଯଦି ଆଜିଠାରୁ ଜମିଦାରୀ ସମ୍ବନ୍ଧରେ କିଛି ବୁଝା ବୁଝି ନ କରେ ସେତେବେଳେ ଅସୁବିଧାରେ ତ' ପଡ଼ିବାକୁ ହେବ।—

ଟିକିଏ ନୀରବ ରହିଲେ ରାଜାସାହେବ। ବସୁଧା ଓ ରତିକାନ୍ତ ଉତ୍ତର ଦେବାପାଇଁ ଚିନ୍ତା କରୁଥାନ୍ତି। ରାଜାସାହେବ ପୁଣି ଆରମ୍ଭ କଲେ —ଜମିଦାରୀ ଛଡ଼ା ଆଉ ଏକ ଅତି ଗୁରୁତ୍ୱପୂର୍ଣ୍ଣ ବ୍ୟବସାୟଟିଏ ମଧ୍ୟ ଅଛି। ବ୍ୟବସାୟଟି କଲିକତାରେ ନୁହେଁ, ବୋମ୍ବାଇରେ। ବର୍ତ୍ତମାନ ଅବସ୍ଥାରେ ମୋର ସେଠାକୁ ଯିବା ଆସିବା କରିବା କେତେଦୂର କଷ୍ଟକର ତାହା ତୁମ୍ଭେମାନେ ବୁଝି ପାରୁଥିବ। ସତ୍ୟଭାମା ଚାଲିଯିବା ପରଠାରୁ ଘର ସହିତ ମୋର ସମ୍ବନ୍ଧ ଏକ ପ୍ରକାର ନଥିଲା। ରତି ପିଲାଦିନରୁ ତାର ଧାଈ-ମା' ସୁବାସିନୀ ପାଖରେ ଥାଏ, ବଡ଼ ହେବାପରେ ତାକୁ ହଷ୍ଟେଲରେ ରଖି ତାର ଶିକ୍ଷାର ବ୍ୟବସ୍ଥା କରିଛି। ଆଜି ପର୍ଯ୍ୟନ୍ତ ସେ ବାହାରେ ଅଛି। ଏଣୁ ଭାବେ, ଏତିକି କେବଳ ଯେପରି ଆମ ପାଖଛଡ଼ା ନ ହେଉ। ତୁମର ମତ କଣ ବୋହୂ-ମା' !—

ବସୁଧା ଅତି ଧୀର କଣ୍ଠରେ କହିଲା—ମୋର ମଧ୍ୟ ସେଇଆ ଇଚ୍ଛା। ସବୁବେଳେ ପାଖେ ପାଖେ ଥାଇ ଆପଣଙ୍କର ସେବା କରୁଥାନ୍ତି। ଯଦି ଆମେ ଘରେ ପଢ଼ି ପ୍ରାଇଭେଟ୍‌ରେ ପରୀକ୍ଷା ଦେଉ ତାହାହେଲେ ବୋଧହୁଏ ଭଲ ହୁଅନ୍ତା।

ହେ-ପ୍ରାଣ୍! ଇଉ···ଆର୍ ଆନନ୍ଦରେ ଯେପରି ନୃତ୍ୟ କରିବାକୁ ଲାଗିଲେ ରାଜାସାହେବ। କହିଲେ—ତୁମେ ଠିକ୍ କହିଛ, ବୋହୂ-ମା ! ରତି, ଦେଖିଲୁ ତ ? ତୁମେ ଉତ୍ତର ଦେବାକୁ

Digitized by srujanika@gmail.com

ଇତଃସ୍ତତଃ କରୁଥିଲି ମିନା, ବୋହୂ-ମା କପର ସାଙ୍ଗେ ସାଙ୍ଗେ ତାହା ସମାଧାନ କରିଦେଲା । ସେଇଥି। କହେ, ବର୍ଷ ଗୋଟାଏ ଦେଖୁ ଦେଖୁ କେଉଁଆଡ଼େ ଚାଲିଯିବ ।

ପ୍ରସଙ୍ଗ ଏତିକିରେ ଶେଷ ହେଲା । ରାଜାସାହେବ ପୁଣି ତମାଖୁ ସେବନ କରୁ କରୁ କହିଲେ – ବୋମ୍ବାଇରେ ଯେଉଁ ଲୁଗା କଳଟି ଅଛି ତା' ପାଇଁ ମୋତେ ଢ଼େର ପରିଶ୍ରମ କରିବାକୁ ପଡ଼ିଛି ॥ ସତ୍ୟଭାମା, ମାନେ ତୁମର ଶାଶୁ ମନା କରୁଥିଲେ—ମାତ୍ର ଗୋଟାଏ ଜିଦ୍‌ରେ ପଡ଼ି ଜଣଙ୍କ ପାଖରୁ ମିଲ୍‌ଟାକୁ କିଣିବାକୁ ହେଲା । ସେହିବର୍ଷ ସତ୍ୟଭାମା ତାର ସଂସାର ଛାଡ଼ି ଚାଲିଗଲା । ମାତ୍ର ଗୋଟାଏ ଦିନ ଜର, ମୁଁ ସେତେବେଳେ ବୋମ୍ବାଇରେ, ମିଲ୍‌ଟା କିଣା ହୋଇ କାମ ଆରମ୍ଭ ହୋଇଥାଏ—ହଠାତ୍ ଟେଲିଗ୍ରାମ ପାଇଲି ସତ୍ୟଭାମା ଅସୁସ୍ଥା । ଆଉ ଡେରି କରିନାହିଁ, ପ୍ଲେନ୍‌ରେ ସିଟ୍ ମଧ୍ୟ ପାଇଗଲି, ମାତ୍ର ଘରକୁ ଆସି ଦେଖିଲି ସତ୍ୟଭାମା ଅଜ୍ଞାନ ହୋଇ ପଡ଼ିଛି । ଡାକ୍ତରମାନେ ଅଛନ୍ତି, ସେମାନଙ୍କର ଚେଷ୍ଟାରେ ତ୍ରୁଟି ନାହିଁ —କିନ୍ତୁ ନିୟତିକୁ ତ ସେମାନେ ବାଧା ଦେଇ ପାରିବେ ନାହିଁ । ସତ୍ୟଭାମା ମୋର ଡାକ ଶୁଣି ଥରଟିଏ ମାତ୍ର ମୋ ଆଡ଼େ ଚାହିଁ କହିଥିଲା— ରତ୍ନ...

ରାଜାସାହେବଙ୍କର ଆଖି ଛଳ ଛଳ ହୋଇ ଆସିଲା । ଆଖି ଦୁଇଟା ପୋଛିଦେଇ କହିଲେ—ଆଉ ତାର ମୁହଁରୁ କଥା ବାହାରିଲା ନାହିଁ । ତାର ଠିକ୍ ଦୁଇଦିନ ପରେ ବୋମ୍ବାଇରୁ ଟେଲିଗ୍ରାମ ଆସିଲା, ମେସିନ୍‌ର ଗୋଟାଏ ବଡ଼ ପାର୍ଟ ଭାଙ୍ଗି ଯାଇଛି, ସେହି ପାର୍ଟ ଯୋଗୁଁ ସମସ୍ତ କାର୍ଯ୍ୟ ବନ୍ଦ । ବାଧ୍ୟ ହୋଇ ପୁଣି ବୋମ୍ବାଇ ଆସିବାକୁ ହେଲା । ଅନେକ ପରିଶ୍ରମ ଓ ବହୁ ଅର୍ଥବ୍ୟୟ କଲାପରେ ଯଦିଓ ମିଲ୍‌ଟା ଚାଲିଲା ଆଜି ପର୍ଯ୍ୟନ୍ତ ଯାହା ଇନ୍‌କମ୍ ହେଲା ଖର୍ଚ୍ଚ ତୁଳନାରେ ତାହା ଦ୍ୱିଗୁଣ କମ୍

Digitized by srujanika@gmail.com

ଅଛି । ନେଣ୍ଣ ଭାବନ୍ତୁ ମିଲ୍‌ ଟାଙ୍କୁ କେତୁଦିନ ପାଇଁ ବନ୍ଦ କରେଦେବ ନଚେତ୍‌ ବେକାରବ ।—ଜଣେ ଗ୍ରାହକ ମଧ୍ୟ ଠିକ୍‌ କରନ୍ତୁ, ଦେଖାଯାଉ କଣ ହେଉଛି···ତାହାହେଲେ ଏଇକଥା ହେଲା, ତୁମ୍ଭେମାନେ ପ୍ରାଇଭେଟ୍‌ ପରୀକ୍ଷା ଦେଉଛ ତ ?—

ଉଭୟେ ସମ୍ମତି ଜଣାଇଲେ ।

ରାଜାସାହେବ ଯିବାପରେ ବସୁଧା ଓ ରତିକାନ୍ତ ଉଭୟେ ଉଠିବାକୁ ବସିଛନ୍ତି, ପୁଣି ରାଜାସାହେବଙ୍କର ଦର୍ଶନ ମିଳିଲା । କହିଲେ—ରତି ! ମୁଁ କହିବାକୁ ଭୁଲି ଯାଇଛି । ଲତିକା ଚିଠିରେ ଲେଖିଛି, ଅନ୍ତତଃ ଦୁଇ-ତିନିଦିନ ପାଇଁ ତୁମ୍ଭମାନଙ୍କୁ ତାଙ୍କ ଘରେ ଅତିଥି ହେବାକୁ ହେବ । ଅନେକ ଅନୁରୋଧ କରି ଲେଖିଛନ୍ତି ଲତିକାର ଶାଶୁ ସୁମାଳମୀ । ତାଙ୍କର ଶରୀର ଅସୁସ୍ଥ ଥିବା ହେତୁ ବିବାହ ବେଳେ ଯୋଗ ଦେଇ ପାରି ନାହାନ୍ତି ବୋଲି ଦୁଃଖ ପ୍ରକାଶ କରିଛନ୍ତି, ଅନୁପମ ମଧ୍ୟ ସୁମାଳମୀଙ୍କର ଅସୁସ୍ଥତା ହେତୁ ଆସି ପାରିନାହିଁ । ତୁମ୍ଭେମାନେ କେବେ ଯିବ କହିଲେ ମୁଁ ତାଙ୍କୁ ଆଜ ଟେଲିଗ୍ରାମ କରି ଜଣାଇ ଦିଅନ୍ତି ।—

ରତିକାନ୍ତ ଚାହିଁଲା ବସୁଧା ଆଡ଼େ ।

ବସୁଧା ମୃଦୁ ସ୍ୱରରେ କହିଲା—ଆପଣ ଯେଉଁଦିନ ଯିବାକୁ ଆଦେଶ କରିବେ—

ଉଚ୍ଚ ସ୍ୱରରେ ହସିଲେ ରାଜାସାହେବ । କହିଲେ—ସବୁ କଥା ମୋ ଉପରେ ନିର୍ଭର କଲେ ତ' ଚଳିବ ନାହିଁ ମା' । ବରଂ ତୁମ୍ଭମାନଙ୍କର ଆଦେଶ, ଉପଦେଶ ମୋର ଗ୍ରହଣ କରିବାର ସମୟ ଏଇଟା । ତୁମ୍ଭେମାନେ ଯେତେବେଳେ ପିଲା ଥିଲ, ଆମ୍ଭେମାନେ ଥିଲୁ ତୁମର ଅଭିଭାବକ—ବର୍ତ୍ତମାନ ତୁମ୍ଭେମାନେ ଯେ ଆମର ଅଭିଭାବକ । ଅଚ୍ଛା, ତାହାହେଲେ ପରର ଦିନ ବାହାରୁଛ ବୋଲି

Digitized by srujanika@gmail.com

ଟେଲିଗ୍ରାମ କରି ଲୁମ୍ବମାନଙ୍କର ଟ୍ରେନ୍ ରିଜର୍ଭେସନ କରି ଦେଉଛୁ । କାଲି ଭିତରେ ଯାହା କିଛି ସାଂଗରେ ନେବା କଥା ସବୁ ସଜାଡ଼ ନିଅ ।

ରାଜା ସାହେବ ଚାଲିଗଲେ ।

ବସୁଧା ଶୟନ କକ୍ଷକୁ ଆସି ଭାବିବାକୁ ଲାଗିଲା, କେଡ଼େ ସରଳ ପ୍ରକୃତିର ଏହି ଲୋକଟି । ଠିକ୍ ଶିଶୁଂକ ପରି ବ୍ୟବହାର । ସ୍ତ୍ରୀଙ୍କୁ ସଏ ଅତି ଭଲ ପାଉଥିଲେ ଏହା ତାଂକର ବ୍ୟବହାରରୁ ଜଣାପଡ଼େ । ତାର ଶାଶୁ, ସତ୍ୟଭାମା ଦେବୀ-। ଯାହାଂକର ତୈଳଚିତ୍ର ଏହି ଶୟନ କକ୍ଷର କାନ୍ଥରେ ଅଛି । ଯାହାଂକର ଆଖି ଦୁଇଟି ବୁଦ୍ଧିମତ୍ତାର ପରିଚୟ ଦିଏ । କମନୀୟ ମୁହଁଟିରେ ଯା'ର ପ୍ରଶାନ୍ତିର ଚିହ୍ନ —ଅଧରରେ ସ୍ନେହମୟୀ ହସ । ଆଜି ଯଦି ସେ ଜୀବିତରେ ଥାଆନ୍ତେ ତାହାହେଲେ ପୁତ୍ରବଧୂକୁ ଦେଖି କି ଅପାର ଆନନ୍ଦ ଯେ ସେ ଅନୁଭବ କରନ୍ତେ, ତାହା ଭାଷାରେ ବର୍ଣ୍ଣନା କରିବାର ଶକ୍ତି ଯେପରି ବସୁଧାର ନାହିଁ ।

ତୈଳଚିତ୍ରଟି ଆଡ଼େ ଫେରି ଚାହିଁଲା ବସୁଧା । ସେହି ହସ ସେହି ଅଧର, ମମତାଭରା ଦୃଷ୍ଟି ବସୁଧାର ଅନ୍ତର ମଧ୍ୟରେ 'ଭକ୍ତିର ଉଦ୍ରେକ କଲା । ଧୂପାଧାରରୁ ଧୂପ ଶେଷ ହୋଇଛି । ବସୁଧା ଉଠି ଧୂପାଧାରରେ ବତୀ ରଖି ଦିଆସିଲି ଜାଳି ଖଣ୍ଡିଏ ଲଗାଇ ଗଳବସ୍ତ୍ର ହୋଇ ପ୍ରଣାମ କଲା ତଳେ ମୁଣ୍ଡ ରଖି । ଠିକ୍ ସେତିକିବେଳେ କଣ ଗୋଟାଏ ମୁଣ୍ଡ ଉପରେ ପଡ଼ିବା ମାତ୍ରେ ଚମକି ଦେଖେତ' ଚିତ୍ରଟିର ଫ୍ରେମ ଉପରୁ ଫୁଲମାଳଟି ଖସି ପଡ଼ି ସିଧା ସିଧା ତାର ଗଳାରେ ଆସି ପଡ଼ିଛି । ବିସ୍ମିତା ହେଲା ବସୁଧା । ଏ ଯେ ଆଶୀର୍ବାଦ, ସତ୍ୟଭାମା ଦେବୀଂକର କଲ୍ୟାଣ ଆଶିଷ ।

Digitized by srujanika@gmail.com

ମା'—ତୁମକୁ କେବେ ଜୀବିତାବସ୍ଥାରେ ଦେଖି ନାହିଁ । କିନ୍ତୁ ତୁମର ଏହି ପ୍ରତିକୃତି ଦେଖି ବୁଝି ପାରୁଛି ତୁମେ କେତେ ସ୍ନେହ-ମୟୀ । କରୁଣାମୟୀ ମା'—ତୁମର ଚରଣ ସେବା କ୍ଷଣକ ପାଇଁ ହେଲେ କରି ପାରିଲି ନାହିଁ । ମନରେ ସେଇଁ ଦୁଃଖ, ତୁମେ ପର-ଲୋକରେ ଥାଇ ମୋର ଅନ୍ତରର କଥା ନିଶ୍ଚୟ ବୁଝି ପାରୁଥିବ । ତୁମର ଏ ଆଶୀର୍ବାଦ ମୋର ଜୀବନର ପାଥେୟ ହୋଇ ରହୁ···

କହିସାରି ପୁଣି ଥରେ ପ୍ରଣାମ କଲା ବସୁଧା ।



ପରଦିନ ଅତି ପ୍ରତ୍ୟୁଷରୁ ଉଠି ସ୍ନାନାଦି ସାରି ବସୁଧା ଫୁଲଡ଼ାଲିଟି ନେଇ ଉଦ୍ୟାନକୁ ଯାଇ ଫୁଲ ତୋଳିବାକୁ ଲାଗିଲା । ଠାକୁରଘର ଭର୍ତ୍ତି କରି ଆଣି ନିଜର ଶୟନ କକ୍ଷରେ ଦୁଆର ମୁହଁ ପାଖରେ ଫୁଲ ଗୁନ୍ଥିବାକୁ ଲାଗିଛି ହଠାତ୍ ଶୁଣିପାରିଲା ରାଜା ସାହେବଙ୍କର କଣ୍ଠସ୍ୱର—ବୋହୂ-ମା, ବୋହୂ-ମା···

ଚମକି ପଡ଼ି ଠିଆ ହୋଇଗଲା ବସୁଧା ମୁହଁ ତଳକୁ କରି । ରାଜାସାହେବ କହିଲେ—ତୁମେ କାହିଁକି ନିଜେ ଫୁଲ ତୋଳିବାକୁ ଗଲ ବୋହୂ-ମା, ଚାକର ଚାକରାଣୀ ଥାଉ ଥାଉ ଏଡ଼େବଡ଼ ଥଣ୍ଡାରେ ତୁମେ ଫୁଲ ତୋଳିବାକୁ ଯାଉଥିଲ ?—

ବାବା !—

କଣ ମା', କୁହ···ରାଜା ସାହେବଙ୍କ ଅଧରରେ ହସର ସୂକ୍ଷ୍ମ ରେଖାଟି ।

Digitized by srujanika@gmail.com

ମା'ଙ୍କର ଫୁଲମାଳାଟି ଶୁଖି ଯାଇଥିଲା, ମୁଁ···କଥା ଶେଷ କଲାନାହିଁ ବସୁଧା ।

ମା' ?···ବସ୍ମିତ କଣ୍ଠସ୍ୱର ରାଜାସାହାବଙ୍କର !···ଆଇ ମିନ୍ ସତ୍ୟଭାମା ! ଏବେ ଶାଶୁଙ୍କର ସେବା ମଧ୍ୟ ଭୁଲାଛୁ । ହତଭାଗିନୀ, ଟିକଏ ଦେଖିବାର ଅବସର ସୁଦ୍ଧା ପାଇଲି ନାହିଁ ।

ନା, ବାବା—ନା । ମା'ଙ୍କ ପରି ଭାଗ୍ୟବତୀ ଆଉ କିଏ ଅଛି ବାବା ! ଯାର ପୁରୁଷସିଂହ ଯାହାଙ୍କର ସ୍ୱାମୀ—ଧନ, ମାନ ଗୌରବରେ ଯିଏ ଅଦ୍ୱିତୀୟ, ତାଙ୍କର ପଦସେବା—ସେପରି ଭାଗ୍ୟବତୀ ନ ହେଲେ କି କରିବା ସମ୍ଭବ । ସ୍ୱାମୀ ଜୀବିତ ଥାଇ ଯେଉଁ ସ୍ତ୍ରୀ ଶଙ୍ଖା-ସିନ୍ଦୂର ନେଇ ସ୍ୱର୍ଗାରୋହଣ କରେ ବାବା, ସେପରି ଭାଗ୍ୟବତୀ ନ ହେଲେ କି ଏହା ସମ୍ଭବ ହୋଇପାରେ ?

ମା···ଏତେ ଅଳ୍ପ ବୟସରୁ ସଂସାର ସମ୍ବନ୍ଧରେ ତୁମର ଏତେବଡ଼ ପାଣ୍ଡିତ୍ୟ । ଶିକ୍ଷା ଓ ପରିବେଶ ଯେ ମନୁଷ୍ୟଙ୍କୁ ମାର୍ଜିତ କରେ ଏହା ନିରର୍ଥକ ବାଣୀ ନୁହେଁ । ମୋର ପାନୀ ବାଛିବାରେ ଯେ ଭୁଲ୍ ହୋଇନାହିଁ, ତୁମର ଏହି କେତେଦିନର ବ୍ୟବହାର ଦେଖି ତାହା ମୁଁ ଜାଣି ପାରିଛି । ଗୁଡ୍, ଭେରିଗୁଡ୍···ତୁମର ଶାଶୁଙ୍କର ବ୍ୟବହାର ଏହିପରି ମଧ୍ୟ ଥିଲା ମା' । ଭୁଲିଗଲି ସିନା, ତାର ସ୍ମୃତି···

ଛଳ ଛଳ ହୋଇ ଆସିଲା ରାଜାସାହେବ ସୁଧାକାନ୍ତର ଆଖି ଦୁଇଟି । ବସୁଧା ତାହା ଲକ୍ଷ୍ୟ କରି କହିଲା— ତାଙ୍କର ସ୍ମୃତି ଯେ ସବୁଦିନ ବିଦ୍ୟମାନ ରହିଛି ବାବା ! ଆପଣ ବିଶ୍ୱାସ କରିବେ କି ନା ଜାଣେନା । ପ୍ରଥମ ଯେଉଁଦିନ ରାଜପୁରୀରେ ଗୋଡ଼ ଦେଲି, ଲତିକା-ଦିଦି ମୋତେ ଶୟନ କକ୍ଷରେ ଛାଡ଼ି ଦେଇଗଲେ,

Digitized by srujanika@gmail.com

ସେଦିନ ବଡ଼ କ୍ଲାନ୍ତ ବୋଧ କରୁଥିଲି—ଆଖି ଦୁଇଟି ଟିକିଏ ଲାଗି ଯାଇଥାଏ, ମୋର ମନେ ହେଲା କିଏ ଯେପରି ମୁଣ୍ଡ ପାଖରେ ବସି ମୁଣ୍ଡଟାକୁ ମୋର ଚିପୁ ଚିପୁ କହୁଥାନ୍ତି—ଅନେକ ଦିନ ପରେ ଏ ଘରେ ଲକ୍ଷ୍ମୀର ପାଦ ପଡ଼ିଲା···ନିଦଟା ମୋର ଭାଙ୍ଗିକରି ଭାଙ୍ଗିଗଲା, ଦେଖେତ' ଘରେ ମୁଁ ଏକା । ଗୋଟାଏ ଅଦ୍ଭୁତ ସୌରଭ ଘର ଭିତରେ ଖେଳି ବୁଲୁଛି । ସେହି ସ୍ପର୍ଶ, ସତେ ବାବା—ଆଜି ପର୍ଯ୍ୟନ୍ତ ମୁଁ ଅନୁଭବ କରୁଛି ସେ ସ୍ପର୍ଶର ଶୀତଳତା । ଆଚ୍ଛା ବାବା, ମା' କ ଗୋଡ଼ରେ କିଛି ଅଳଙ୍କାର ବ୍ୟବହାର କରୁଥିଲେ ?

ଏ ପ୍ରଶ୍ନ କାହିଁକି ମା' !—ପଚାରିଲେ ରାଜାସାହେବ ।

ମୁଁ—ମୁଁ···

କୁହ ମା'—ସଙ୍କୋଚ କରନା—

ପ୍ରତିଦିନ ସନ୍ଧ୍ୟାବେଳେ ମୁଁ ଯେତେବେଳେ ମା'ଙ୍କର ଫଟୋରେ ଫୁଲମାଳ ଦେଇ ଧୂପ ଜଳାଏ ଠିକ୍ ସେତିକିବେଳେ କିଏ ଯେପରି ନୂପୁର ବଜାଇ ଧୀରେ ଧୀରେ ପାଖକୁ ଆସୁଛନ୍ତି ବୋଲି ଶୁଣିପାରେ । ହଠାତ୍ ଶବ୍ଦଟି ଥମକି ଯାଏ । ପୁଣି କିଛି ସମୟପରେ ଶବ୍ଦଟି ଶୁଣାଯାଇ କ୍ରମେ କ୍ରମେ ମିଳେଇଯାଏ ବତାସରେ । ମୁଁ ଠିକ୍ ମନେକରେ, ମା' ନିଶ୍ଚୟ ଆସୁଛନ୍ତି ସନ୍ଧ୍ୟା ଆରତି ନେବା ପାଇଁ ।

ମୁହୂର୍ତ୍ତେ କଣ ଭାବିଲେ ରାଜାସାହେବ ! ପରେ କହିଲେ—ତୁମ କଥା ଯଦି ଠିକ୍ ହୁଏ, ସତ୍ୟଭାମାର ଗୋଡ଼ର ଅତିପ୍ରିୟ ଅଳଙ୍କାର ଦୁଇଟି ଥିଲା ନୂପୁର ।··· ତୁମେ ବଡ଼ ଚିନ୍ତାରେ ପକାଇଲ ମା' ! ତୁମେ ବଡ଼ ଚିନ୍ତାରେ ପକାଇଲ···

ଅସ୍ଥିର ପଦରେ ଘରୁ ବାହାରି ଗଲେ ରାଜାସାହେବ ।



Digitized by srujanika@gmail.com

ଲତିକା ଆନନ୍ଦରେ ଗଦଗଦ ହୋଇପଡ଼ିଲା ।

ରତିକାନ୍ତ ଓ ବସୁଧା ଗାଡ଼ିରୁ ଓହ୍ଲାଇବା ସଙ୍ଗେ ସଙ୍ଗେ ଲତିକା ଓ ଅନୁପମର ଦେଖା ପାଇଲେ । ରାଜାସାହେବଙ୍କର ଟେଲିଗ୍ରାମ ପାଇ ଉଭୟେ ଷ୍ଟେସନକୁ ଆସିଥିଲେ ସେମାନଙ୍କୁ ପାଛୋଟି ନେବା ପାଇଁ । ସାମାନ୍ୟ ଚେଷ୍ଟାକରି ସେମାନେ ରତିକାନ୍ତଙ୍କୁ ପାଇଲେ । ଲତିକା ଅନୁପମ ସହିତ ବସୁଧାର ପରିଚୟ କରାଇ ଦେଲା । ଷ୍ଟେସନର ବାହାରେ ଅନୁପମର କାର୍ ରହିଥିଲା । ଅନୁପମ ନିଜେ ଡ୍ରାଇଭ୍ କରି ସେମାନଙ୍କୁ ଘରକୁ ଆଣିଲା ।

ଘରକୁ ଆସି ସୁମାଳିନୀ ଦେବୀଙ୍କୁ ଉଭୟେ ପ୍ରଣାମ କଲେ । ଆଗରୁ ପ୍ରସ୍ତୁତ ଥିଲେ ସୁମାଳିନୀ ଦେବୀ । ବସୁଧା ପ୍ରଣାମ କରି ଉଠିବା ମାତ୍ରେ, ସେ ତାର ଚିବୁକ ସ୍ପର୍ଶ କରି ଗୋଟିଏ ମୂଲ୍ୟବାନ ନେକ୍‌ଲେସ୍ ପିନ୍ଧାଇ ଦେଇ କହିଲେ—ଏ ଯେ ଖାଲି ଲକ୍ଷ୍ମୀ ନୁହେଁ, ଲକ୍ଷ୍ମୀ ସରସ୍ୱତୀଙ୍କୁ ମୁଁ ଏକତ୍ର ଦେଖୁଛି । ଭାଇଙ୍କୁ ପ୍ରଶଂସା କରିବାକୁ ହେବ, ସେ ଠକି ନାହାନ୍ତି—ଅମୂଲ୍ୟ ସମ୍ପଦ ଘରକୁ ଆଣିଛନ୍ତି ।

ବସୁଧାର ମୁଖମଣ୍ଡଳ ଆରକ୍ତିମ ହୋଇ ଉଠିଲା । କହିଲା— ମାଉସୀ ! ଆପଣ ମୋତେ ଖୁବ୍ ଉଚ୍ଚକୁ ଟେକି ଦେଉଛନ୍ତି । ଆପଣଙ୍କର ପାଦଧୂଳି ଟିକକ ଲଭି କରିବାର ସୌଭାଗ୍ୟ ଯେ ମୋର ହୋଇଛି, ଏହାଠୁଁ ବଳି ଆଉ ଶ୍ରେଷ୍ଠ ବସ୍ତୁ ଦୁନିଆରେ କିଛି ଅଛି ବୋଲି ମୁଁ ମନେ କରେନା ।

ମୃଦୁ ହସି ସୁମାଳିନୀ ଦେବୀ ବସୁଧାକୁ ଭିତରକୁ ନେଇଗଲେ । ରତିକାନ୍ତ ଓ ଅନୁପମ ବୈଠକଖାନାରେ ବସି କଥାବାର୍ତ୍ତା ହେଲେ ।

Digitized by srujanika@gmail.com

ଖିଆ ପିଆ ପୂର୍ବରୁ ବସୁଧା ଲକ୍ଷ୍ମୀଙ୍କୁ କହିଲା—ମା' କେଉଁଠି ଅଛନ୍ତି, ଦାଦା—

କାହିଁକି ଖୋଜୁଛ ? ଏଣେ ଖାଇବାର ବେଳ ହୋଇଛି, ଖାଇ ସାର। ମା' ଠାକୁର ଘରେ ଅଛନ୍ତି, ତାଙ୍କର ବାହାରୁ ବାହାରୁ ଡେରି ହେବ।

ତୁମେ ଖାଇବାକୁ ବସ। ମା' ଠାକୁର ଘରୁ ଆସନ୍ତୁ, ମୁଁ ଖାଇବି।...

ଲକ୍ଷ୍ମୀ ସେତେ ବୁଝାଇଲେ ମଧ୍ୟ ବସୁଧା ତା କଥା ଶୁଣିଲା ନାହିଁ। ଅବଶ୍ୟ ବେଶି ସମୟ ଅପେକ୍ଷା କରିବାକୁ ପଡ଼ିଲା ନାହିଁ। ସୁମାଳିନୀ ଦେବୀଙ୍କର କଣ୍ଠସ୍ୱର ଶୁଣାଗଲା—ବସୁକୁ ନେଇ ଖାଇ-ବାକୁ ବସିଲଟି' ବୋହୂ ମା।

ଲକ୍ଷ୍ମୀ କିଛି କହିବା ଆଗରୁ କ୍ଷିପ୍ର ପଦରେ ବସୁଧା ତାଙ୍କ ପାଖକୁ ଚାଲିଗଲା। ଠାକୁର ଘର ଦୁଆରେ ଚାବି ପକାଉଥିଲେ ସୁମାଳିନୀ ଦେବୀ। ବସୁଧାକୁ ଦେଖି ଠିଆ ହୋଇଗଲେ। ବିସ୍ମିତ କଣ୍ଠରେ ପଚାରିଲେ—କଣ ହୋଇଛି ମା'! ତୁମର ହାତରେ ସେ କଣ ?—

ଆପଣ ଟିକଏ ଠିଆ ହୁଅନ୍ତୁ ମାଉସୀ।...

ବସୁଧା ଯାଙ୍ଗରେ ଆଣିଥିବା ପାଣି ଗିଲାସଟିକୁ ନେଇ ସୁମାଳିନୀ ଦେବୀଙ୍କ ପାଖକୁ ଆସି ନଇଁପଡି ପାଣିରେ ତାଙ୍କର ପାଦ ଧୋଇ ଦେଇ ପାଦୋଦକ ମୁହଁରେ ଦେଇ ପ୍ରଣାମ କରି ଉଠିଲା ବସୁଧା। ତାର ବ୍ୟବହାର ଦେଖି ବିସ୍ମିତ ହେଲେ ମଧ୍ୟ ମନେ ମନେ ସନ୍ତୁଷ୍ଟ ଲାଭ କଲେ ସୁମାଳିନୀ।

ଏ କଣ କଲୁ ମା'!

Digitized by srujanika@gmail.com

ମୋର କର୍ତ୍ତବ୍ୟ ମୁଁ କରୁଛି, ମାଉସୀ । ଜୀବନରେ ଶାଶୁଙ୍କୁ ତ’ ଦେଖିଲି ନାହିଁ । ମୋ ପରି ହତଭାଗିନୀ ଆଉ କିଏ ଅଛି ? ଯାହା-ହେଉ, ଶ୍ୱଶୁର ତାଙ୍କର ଫଟୋ ଖଣ୍ଡିକ ରଖିଛନ୍ତି, ସେହି ଫଟୋର ଗୋଡ଼ତଳେ ମୁଣ୍ଡିଆ ମାରି ଜଳଗ୍ରହଣ କରେ । ଆପଣଙ୍କୁ ଯେତେ-ବେଳେ ପାଇଛି, ସହଜରେ କି ଆଉ ଛାଡ଼ିବି···

ସୁମାଳିନୀ ଦେବୀ ବସୁଧାର ମୁଣ୍ଡରେ ହାତ ବୁଲାଇ ଦେଇ କହିଲେ—ସୁଖୀ ହ-ମା···ସ୍ୱାମୀ ସନ୍ତାନ ନେଇ ସୁଖରେ ସଂସାର କର···ଯା’ ମା, ଖାଇବୁ ଯା’···ଡେରି କରିବଣି—

ନିଃଶବ୍ଦରେ ଚାଲି ଆସିଲା ବସୁଧା, ଲଡକା ତାରି ଅପେକ୍ଷାରେ ଭୋଜନ ଟେବୁଲ ପାଖରେ ବସିଥିଲା । ବସୁଧା ଆସି ନଇଁ ପଡ଼ି ପ୍ରଣାମଟାଏ ମାରି ହସି ହସି କହିଲା—ଆସ ବଦ, ଆସ ।

ବସୁଧା ତାକୁ ପ୍ରଣାମ କରିବା ଦେଖି ସେ ବିସ୍ମିତ କଣ୍ଠରେ କହିଲା—-ଏଇଟା କଣ ହେଲା ନୂଆ-ବୌ । ମୁଁ ଭାବିଥିଲି ଅଭ୍ୟାସଟା ତୁମେ ଭୁଲିଗଲଣି । ସେଉଁ କେତେଦିନ ତୁମ ଘରେ ଥିଲି, ନିତି ତ’ ଖାଇବାକୁ ଯିବା ପୂର୍ବରୁ ପ୍ରଣାମ କର ବୋଲି ତୁମକୁ ବାରଣ କରିଥିଲି । କହିଥିଲି ପୁରୁଣା ତ’ ହୋଇଗଲି, ଆଉ ଏ ସବୁ କାହିଁକି ? ମୋ କଥା ମାନିଲ ନାହିଁ । ଏଠିକି ଆସି ଅଭ୍ୟାସଟା ଭୁଲି ନାହିଁ ଦେଖୁଛି ।

ମଣିଷର ଅଭ୍ୟାସଟା ତ ମରିବା ଯାଏ ଥାଏ ଦଦ !—ଥାଉ, ଆସ ଖାଇବ ଆସ । କଥାରେ କଥାରେ ଅନେକ ଡେରି ହୋଇ ଗଲେଣି ।

ଲଡକା ଆଉ କିଛି ନ କହି ଖାଇବାକୁ ବସିଲା ।



Digitized by srujanika@gmail.com

ତାପରେ କେତେଦିନ ଲତିକା ଓ ରତିକାନ୍ତ ସେଠାରେ ଥିଲେ ବେଶ୍ ଆମୋଦ ପ୍ରମୋଦ ଭିତରେ ଦିନ ଗୁଡ଼ିକ କଟି ଯାଇଥିଲା । ସୁମାଳିନୀ ଦେବୀ ସେମାନଙ୍କୁ ଆଉ କିଛି ଦିନ ରହିବା ଲାଗି ବାଧ୍ୟ କରୁଥିଲେ, ମାତ୍ର ପୁଣି ସୁବିଧା ପାଇଲେ ନିଶ୍ଚୟ ଆସିବେ ବୋଲି କହି ସେମାନେ ଚାଲି ଆସିଲେ ।

ରାଜାସାହେବ ସେମାନଙ୍କର ଅପେକ୍ଷାରେ ଥିଲେ । ସେମାନେ ପହଞ୍ଚିବା ଦେଖି ଅତିଶୟ ଖୁସି ହୋଇ କହିଲେ—ଆଜି ତୁମ୍ଭେମାନେ ନଫେରିଥିଲେ ମୁଁ ଖୁବ୍ ଅସୁବିଧାରେ ପଡ଼ିଥାନ୍ତି । ଘଣ୍ଟାଏ ପୂର୍ବରୁ ଟେଲିଗ୍ରାମ ପାଇଛି, ବୋମ୍ବାଇକୁ ଆଜି ରାତି ଗାଡ଼ିରେ ଯିବାକୁ ହେବ । ମୋର ବେଡ଼ିଂପତ୍ର ପ୍ରସ୍ତୁତ କରିବାକୁ ଅବଶ୍ୟ ଚାକରକୁ କହି ଦେଇଛି । ତୁମ୍ଭେମାନେ ଫେରିଛ, ଖୁବ୍ ଭଲ ହୋଇଛି ।

ରାଜାସାହେବ ବାହାରିବା ପୂର୍ବରୁ ବସୁଧା ତାଙ୍କ ପାଇଁ ରାତି ଭୋଜନ, କଫି ଓ ଅନ୍ୟାନ୍ୟ ଆବଶ୍ୟକୀୟ ଜିନିଷମାନ ସଜାଡ଼ି ଦେଲା । ନିଜେ ପାଖରେ ବସି ତାଙ୍କୁ ଭଲ କରି ଖୁଆଇ ପିଆଇ ଶୟନ କକ୍ଷକୁ ନେଇ ଆସି କହିଲା—ଆପଣ ଭଲଭାବେ ଦି'ଘଣ୍ଟା ବିଶ୍ରାମ ନିଅନ୍ତୁ । ଗାଡ଼ି ଟାଇମ୍ ହେଲେ ମୁଁ ଆପଣଙ୍କୁ ଉଠାଇଦେବି ।

କିନ୍ତୁ ମୁଁ ଭାବୁଛି ଓଏଟିଂ ରୁମ୍‌ରେ ବିଶ୍ରାମ ନେଲେ ଭଲ ହୁଅନ୍ତା । ତୁମ୍ଭେମାନେ ଫେର୍ ମୋ ପାଇଁ ଅନିଦ୍ରା ଥାଇ ଅପେକ୍ଷା କରିବ, ସ୍ୱାସ୍ଥ୍ୟ ନିଶ୍ଚୟ ଖରାପ ହେବାର ସମ୍ଭାବନା ଅଛି । କାହିଁକି ତୁମ୍ଭେମାନେ ଅକାରଣରେ କଷ୍ଟ ପାଇବ ?···ରାଜାସାହେବ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଚାହିଁଲେ ପୁତ୍ରବଧୂକୁ ।

Digitized by srujanika@gmail.com

ଆପଣ କଣ ଭାବୁଛନ୍ତି, ଓ୍ୱେଟିଂ ରୁମ୍‌ରେ ବିଶ୍ରାମ ନେଇ ପାରିବେ ? କେତେ ଲୋକ ଯା-ଆସ କରିବେ—ଲୋକ ପାଇଲେ ଆପଣ ଗପ ଆରମ୍ଭ କରିବେ ଯେ, ରାତି କେତେବେଳେ ପାହିଲା ତାହା ଜଣାପିବ ନାହିଁ । ଏଇସ୍ତ୍ରୀ କରି ତ' ନଜର ସ୍ୱାସ୍ଥ୍ୟ ଆଡ଼େ ଦୃଷ୍ଟି ଦେଇନାହାନ୍ତି । ବର୍ତ୍ତମାନ ଘରେ ବିଶ୍ରାମ ନେବା କଥା । ମୁଁ ତାହାହେଲେ ସେବା କରିବା ସୁଯୋଗ ଟିକକ ପାଆନ୍ତି । ଖାଲି ଶୋଇ ବସି ମୋର ଦିନ ଗୁଡ଼ାକ କଟୁଛି ।···ବସୁଧା ରାଜାସାହେବଙ୍କର ମୁଖ ଶୋଧନ ପାଇଁ ମସଲା ସଜାଡ଼ୁ ସଜାଡ଼ୁ କହିଲା ।

ରାଜାସାହେବ ହସିଲେ । କହିଲେ—ପୁଅକୁ ମା'-ମାନେ ବୋଧହୁଏ ଏହିପରି ଭୁଲାଇଥାନ୍ତି ନା ? ତୁମର ଦିନ ଖାଲି ଶୋଇ ବସି କଟୁଛି କି ନା ମୋ ଅପେକ୍ଷା ଅଧିକ କିଏ ଜାଣେ କୁହତ ? ସକାଳୁ ଉଠି ଫୁଲ ତୋଳାଠୁ ଆରମ୍ଭ କରି ଘରର ଯାବତୀୟ କାର୍ଯ୍ୟ ବୁଝିବା ପାଇଁ ଚକର ପରି ସବୁଆଡ଼େ ଘୂରୁଛ, ତହିଁରେ ପୁଣି ମୋର ସେବା, ଏପରିକି ତମାଖୁ ସଜାଇବା ପର୍ଯ୍ୟନ୍ତ ସବୁତ ଦେଖୁଛି—ଏ ଗୁଡ଼ାକ କି କାମ ନୁହେଁ ? ବାରଟା ପୂର୍ବରୁ ତୁମେ କି କେବେ ବିଶ୍ରାମ ନେବାକୁ ଯାଇଛ ବୋଲି କହିପାର ?—

ମୁଖ-ଶୋଧନ ମସଲା ଗୁଡ଼ିକ ରାଜାସାହେବଙ୍କର ହାତକୁ ବଢ଼ାଇ ଦେଇ ବସୁଧା କହିଲା—ଚାଲନ୍ତୁ, ଆପଣଙ୍କୁ ବିଛଣାରେ ଛାଡ଼ି ଦେଇ ଆସେ । ତା' ନ ହେଲେ ଗପି ଗପି ଟ୍ରେନ୍ ଫେଲ କରିବେ···

ବସୁଧା ଏକ ପ୍ରକାର ଜୋର୍ କରି ରାଜାସାହେବଙ୍କୁ ଶୟନ କକ୍ଷ ଆଡ଼େ ନେଇ ଯାଉଥିଲା, ରାଜାସାହେବ ଯାଉ ଯାଉ ଠିଆ ହୋଇଯାଇ କହିଲେ—ତୁମେ ଯାଅ,ମା-ମୁଁ ଡ୍ରାଇଭରଟାକୁ ଡେରିରେ ଯିବା କଥାଟା କହିଆସେ ।—

Digitized by srujanika@gmail.com

ଆପଣ କାହିଁକି ସେ କଥା ଭାବୁଛନ୍ତି, ମୁଁ ଆଗରୁ ସବୁ ଠିକ୍‌ଠାକ୍ କରି ରଖିଛି—ଆପଣ ଚାଲିଲେ···

ନିଶ୍ଚୟ ଆଗ ଜନ୍ମରେ ତୁମେ ମୋର ମା' ଥିଲ, ବୋହୂରାଣୀ ! ରତ୍ନକୁ ତୁମେହିଁ କେବଳ ମଣିଷ କରି ପାରିବ ।—

ରାଜାସାହେବ ଶଯ୍ୟାରେ ଆଶ୍ରୟ ନେବାପରେ ବସୁଧା ଘରର ଉଜ୍ଜଳ ଆଲୋକଟିକୁ ଲିଭାଇ ଦେଇ ମୃଦୁ ନୀଳାଭ ଆଲୋକଟିକୁ ଜଳାଇ ଦେଇ ଦୁଆର ଆଉଜାଇ ଆଣି ଚାଲି ଆସିଲା । ରତ୍ନକାନ୍ତ ଖଣ୍ଡିଏ ଉପନ୍ୟାସ ନେଇ ପଢ଼ୁଥିଲା, ବସୁଧା କହିଲା—ଆସ, ଖାଇବ ଆସ···

ହଁ, ଚାଲ—

ଡାଇନିଂ ହଲ୍ ଆଡ଼େ ଆସୁ ଆସୁ ବସୁଧା କହିଲା—ଗୋଟାଏ କଥା ରଖିବ ?—

କଣ କହୁଛ ?—

ଚାଲ ଷ୍ଟେସନ ଯାଇ ବାବାଙ୍କୁ ଗାଡ଼ିରେ ବସାଇ ଦେଇ ଆସିବା ।

ହଁ, ଚାଲ । ବାବା ମୋତେ ନ ପଠାଇ କାହିଁ ନିଜେ ଏତେ ପରିଶ୍ରମ କରୁଛନ୍ତି ଯେ—

ବସୁଧା ହସିଲା ।

ହସିଲ କାହିଁକି ?—

ତୁମେ ଭାରି ବୋକା···

କେମିତି ଜାଣିଲ ?—

ତୁମର କଥାବାର୍ତ୍ତାରୁ···ରତ୍ନ, ତୁମେ ବୁଝି ପାରିଲ ନାହିଁ ଯେ, ଆମର ବାହାଘର ମାତ୍ର ତିନି ମାସ ହେଲା ହୋଇଛି । ତୁମକୁ ଆଉ ସାଙ୍ଗରେ ନଥିଲେ କେମିତି ?

Digitized by srujanika@gmail.com

ହସିହସି କହିଲା ରତିକାନ୍ତ···ଏତେବେଳେ ବୁଝିଲ ! କିନ୍ତୁ ସିଏତ ତାହାହେଲେ ଦୁହିଁଙ୍କୁ ସାଙ୍ଗରେ ନେଇ ପାରନ୍ତେ ।

ପାରନ୍ତେ, ମାତ୍ର ନୂଆ ବୋହୂ ହୋଇ ହଠାତ୍ ବିଦେଶ ଯାତ୍ରା ଠିକ୍ ହେବ ନାହିଁ ବୋଲି ମନେ କରିପାରି ଥାନ୍ତି ।

ଉଭୟେ ଡାଇନିଂ ଟେବୁଲ ପାଖରେ ବସି ଖାଉଖାଉ ବସୁଧା କହିଲା—କଲେଜ କୋର୍ସ ପଢ଼ୁନ ନା, ନଭେଲ ପଢ଼ି ଦିନ କାଟୁନ ?—

ତୁମେ କଣ କରୁନ କହିଲ ? କୋର୍ସ ବହି ନା ପୋଥି ପୁରାଣ ? ଭାବୁଛ ମୁଁ କିଛି ଜାଣେନା । ଠାକୁର ଘରେ ତ ଯାହା ପଢ଼ିବାର ପଢ଼ୁଛ, ବାକି ଟିକିଏ ସମୟ ପାଇଲେ, ଏପରି କି ଖାଇସାରି ବଇଠକିକୁ ଯିବା ଆଗରୁ ପୁରାଣ ବହି ଖୋଲି ପଢ଼ୁନା ? ମୁଁ ଶୋଇ ପଡ଼ୁଛି ବୋଲି ତୁମେ ଯିନା ଭାବ, କିନ୍ତୁ ପୁରୁଷର ସନ୍ଦେହ ଜିନିଷଟା ବଡ଼ ଭୟଙ୍କର ।

ଜାଣେ···ହସିହସି କହିଲା ବସୁଧା···କିନ୍ତୁ ସ୍ତ୍ରୀ ସନ୍ଦେହର ଅର୍ଥ ଖୋଜି ବୁଲେ । ଯେଉଁ ପୁରୁଷ ସ୍ତ୍ରୀକୁ ସନ୍ଦେହ ଚକ୍ଷୁରେ ଦେଖେ ତା'ର ସେ ସନ୍ଦେହ ଅନେକ ସମୟରେ ନିରର୍ଥକ ହୋଇ ପାରେ, ମାତ୍ର ସ୍ତ୍ରୀର ସନ୍ଦେହ ଅତି ନିର୍ଭୁଲ ।···

ହସ କୌତୁକ ମଧ୍ୟରେ ଖିଆ ପିଆ ଶେଷ କରି ଉଭୟେ ଶୟନ କକ୍ଷକୁ ଆସିଲେ । ବସୁଧା କହିଲା—ତୁମେ ଶୋଇପଡ଼ । ମୁଁ ଟିକିଏ ବହିଟା ନେଇ ବସୁଛି ।···

ଷ୍ଟେସନ ଯିବା କଥା କହୁଥିଲ ନା ?—

ମୋର ମନେ ଅଛି । ଠିକ୍ ସମୟରେ ମୁଁ ତୁମକୁ ଡାକି-ଦେବି···

Digitized by srujanika@gmail.com

ଆରାମ ଚେୟାରଟିରେ ବସି ବସୁଧା "ମହାଲକ୍ଷ୍ମୀ ପୁରାଣ"ଟିକୁ ନେଇ ଖୋଲିଲା । ମନେ ମନେ ପଢ଼ୁଥାଏ' ରତିକାନ୍ତଙ୍କୁ ପ୍ରାୟ ସଙ୍ଗେ ସଙ୍ଗେ ନିଦ ଲାଗିଗଲା ।

ଦେଉଳବାଡ଼ୀର ପିତା ଘଣ୍ଟାରେ ରାତି ବାରଟା ବାଜିଗଲା । ବସୁଧାର ଆଖି ଯୋଡ଼ିକ ବୁଜି ହୋଇ ଆସୁଥାଏ । କିନ୍ତୁ ଆଜି ଅଧଘଣ୍ଟା ଯାଏ ତାକୁ ନିଶ୍ଚୟ ଚେଇଁ ରହିବାକୁ ହେବ । ତା'ପରେ ଆଗେ ରତିକାନ୍ତଙ୍କୁ ଉଠାଇ, ରାଜାସାହେବଙ୍କୁ ଯାଇ ଉଠାଇବ । ସେମାନେ ଅଧଘଣ୍ଟା ଭିତରେ ପ୍ରସ୍ତୁତ ହୋଇ ପଡ଼ିବେ । ଗାଡ଼ି ଗୋଟାଏ ପଇଁତିରିଶରେ । ଯଥେଷ୍ଟ ସମୟ ଅଛି । ରାଜାସାହେବଙ୍କ ସଙ୍ଗରେ ଯେଉଁମାନେ ଯିବେ ସେମାନେ ତ ଆଗରୁ ଷ୍ଟେସନକୁ ଚାଲିଗଲେଣି ।

ଠିକ୍ ସମୟରେ ବହିଟିକୁ ବନ୍ଦ କରି ଉଠିଲା ବସୁଧା । ରତିକାନ୍ତ ମଧ୍ୟ ଥରେ ଦୁଇଥର ଡ଼ାକରେ ଉଠିବସିଲା । ତାକୁ ପ୍ରସ୍ତୁତ ହେବାକୁ କହି ସେ ରାଜାସାହେବଙ୍କୁ ଉଠାଇବା ଲାଗି ତାଙ୍କର ଶୟନ କକ୍ଷକୁ ଆସିଲା ।

ଦରଜାଟିକୁ ଖୁବ୍ ସାବଧାନରେ ମେଲି କରି ଭିତରକୁ ଆସି ଦେଖେ ତ' ରାଜାସାହେବ ଗଭୀର ନିଦ୍ରାରେ ଆଚ୍ଛନ୍ନ ହୋଇ ପଡ଼ି-ଛନ୍ତି । ଧୀରେ ଧୀରେ ପାଦ ପକାଇ ତାଙ୍କ ମୁଣ୍ଡ ପାଖରେ ଆସି ଠିଆହେଲା । ନିଶ୍ଚିନ୍ତରେ ଶୋଇଛନ୍ତି ପୁରୁଷସିଂହ । ମୁହଁରେ ହସଟି ଲାଗି ରହିଛି । କେଡ଼େ ଶାନ୍ତ' କେଡ଼େ ନିଶ୍ୱାଦ ଦେଖାଯାଉଛନ୍ତି ।

ବାବା ! ବାବା !—ମୃଦୁ କଣ୍ଠରେ ଡାକିଲା ବସୁଧା ।

ଦୁଇ ତିନିଥର ଡ଼ାକିବା ପରେ ରାଜାସାହେବ କ୍ଷୀଣ ସ୍ୱରରେ ଉତ୍ତର ଦେଲେ—ଉଁ···

ଉଠନ୍ତୁ, ବେଳ ହେଲଣି···

Digitized by srujanika@gmail.com

ଧଡ଼ପଡ଼୍ ହୋଇ ଉଠିବସିଲେ ରଜାସାହେବ । ଆଖି ମଳି ମଳି କହିଲେ—ମୁଁ ତାହାହେଲେ ପ୍ରସ୍ତୁତ ହେଉଛି ମା'···ତୁମେ ଡ୍ରାଇଭରକୁ—

ଡ୍ରାଇଭର ଗାଡ଼ି ବାହାର କରି ସାରିଛି । ଆପଣ ଆସନ୍ତୁ, ଯାହା ଯାହା ଯିବାର କଥା ମୁଁ ଗାଡ଼ିରେ ବନ୍ଦୋବସ୍ତ କରୁଛି ।

ତୁମ କଥା ନ ମାନିଥିଲେ ବାସ୍ତବିକ କ୍ଳାନ୍ତ ବୋଧ କରିଥାନ୍ତି । ବର୍ତ୍ତମାନ ଦେହଟା ବେଶ୍ ସୁସ୍ଥ ଓ ହାଲୁକା ଜଣାଯାଉଛି । ଚାଲ ମା, ଚାଲ୍···

ବସୁଧା ଘରୁ ଚାଲିଆସିଲା । ରଜାସାହେବ ଯେତେବେଳେ ଗାଡ଼ି ପାଖକୁ ଆସନ୍ତି, ଦେଖିଲେ, ରବିକାନ୍ତ ଓ ବସୁଧା ଉଭୟେ ଗାଡ଼ି ପାଖରେ ଆସି ଠିଆ ହୋଇଛନ୍ତି । ବିସ୍ମିତ କଣ୍ଠରେ ରଜା-ସାହେବ କହିଲେ—ତୁମ୍ଭେମାନେ ପୁଣି ଥଣ୍ଡାରେ ଠିଆ ହୋଇଛ କାହିଁକି ? ଯାଅ ସବୁ, ଘରେ ବିଶ୍ରାମ ନିଅ ।

ଆମେ ଆପଣଙ୍କୁ ଗାଡ଼ିରେ ଉଠାଇ ଦେଇ ଆସିବୁ, ବାପା ! —ମୃଦୁ ସ୍ୱରରେ କହିଲା ବସୁଧା ।—

ଆଇ-ସି !— ଦେଖୁଛି ତୁମ୍ଭେମାନେ ବରାବର ମୋତେ ଗାଡ଼ି କରୁଛ ! ଆଚ୍ଛା, ମୁଁ ଫେରେ, ତୁମ୍ଭମାନଙ୍କ କଥା ବୁଝୁଛି···
ଗାଡ଼ି ଉଲ୍‌କା ବେଗରେ ଚାଲିଲା ।



Digitized by srujanika@gmail.com

ରତିକାନ୍ତ ଓ ବସୁଧା ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାନ୍ତି । ସମସ୍ତ କାର୍ଯ୍ୟ ଭିତରେ ପଢ଼ାପଢ଼ି ପାଇଁ ସମୟ କରି ନେଇ-ଥାଏ ବସୁଧା । ରତିକାନ୍ତର କାର୍ଯ୍ୟ କହିଲେ କିଛି ନାହିଁ—ଅଖଣ୍ଡ ବିଶ୍ରାମ । ବସୁଧାର କଥାରେ କେବଳ ବହି ନେଇ ବସେ । ଦିନବେଳା ବିଶେଷ ସମୟ ପାଏନା ବସୁଧା, ମାତ୍ର ସନ୍ଧ୍ୟାହେଲେ ମଧ୍ୟରାତ୍ରି ପର୍ଯ୍ୟନ୍ତ ବହି ନେଇ ବସେ ।

ଇତିମଧ୍ୟରେ ଶମିତା ପାଖରୁ ଚିଠି ଖଣ୍ଡିଏ ପାଇଛି ବସୁଧା । ଶମିତା ଖୁବ୍ ସୁଖରେ ଅଛି, ମଦନ ତାକୁ ଭଲ ପାଏ । ତାକୁ କେତେଗୁଡ଼ିଏ ତୀର୍ଥ ସ୍ଥାନ ମଧ୍ୟ ଦେଖାଇ ଆଣି ସାରିଲାଣି । ନିକଟରେ ଯଦି ସମ୍ଭବ ହୁଏ ସେ ଦିଦି ପାଖକୁ ମଧ୍ୟ ଆସିପାରେ ।

ବସୁଧା ମଧ୍ୟ ଚିଠି ପାଇ ଚିଠି ଦେଇଛି । ରତିକାନ୍ତ ଓ ସେ ପରୀକ୍ଷା ପାଇଁ ଦୁହେଁ ବ୍ୟସ୍ତ ଅଛନ୍ତି ବୋଲି କେଉଁଆଡ଼େ ଯାଇ ପାରୁନାହାନ୍ତି । ପରୀକ୍ଷା ସରିଲେ ତା'ର ଭାରି ଇଚ୍ଛା ଥରେ କାଶ୍ମୀରଆଡ଼େ ଆଡ଼େ ଘୂରି ଆସିବ ।

ଗୋଟାଏ ସପ୍ତାହ କଟିଗଲା । ରାଜାସାହେବ କୌଣସି ଚିଠି ଏପର୍ଯ୍ୟନ୍ତ ପଠାଇଲେ ନାହିଁ କାହିଁକି ? କଣ ହେଲା ତାଙ୍କର ! କହିଥିଲେ ପହଞ୍ଚିବା ମାତ୍ରେ ଚିଠି ଦେବେ । ବସୁଧାର ଲଲାଟ କୁଞ୍ଚିତ ହୋଇ ଆସିଲା । ନା, ରତିକାନ୍ତକୁ କହି କାଲି ଗୋଟାଏ ଟ୍ରଙ୍କ୍‌କଲ ବୁକ୍ କରିବାକୁ ହେବ ।

ଅସଂଖ୍ୟ ଚିନ୍ତା ବସୁଧାର ମୁଣ୍ଡ ଭିତରେ । ଆଜି ସକାଳୁ କାହିଁକି ମନଟା ବଡ଼ ଅସ୍ଥିର ହେଉଛି । କୌଣସି କାର୍ଯ୍ୟରେ ମନ ଲାଗୁନା, କିପରି ଗୋଟାଏ ଶୂନ୍ୟତା ଭରି ରହିଛି ତାର ଚତୁଃ-ପାର୍ଶ୍ୱରେ ଯେପରି ।

Digitized by srujanika@gmail.com

ରବିକାନ୍ତ କେତେବେଳୁ ବାହାରକୁ ଯାଇଛି ଦେଖାନାହିଁ । ସେ ଅବା ଘରେ ଥିଲେ ଏ ନିର୍ଜନତା କିଛି ହେଲେ ଭୁଲା ହୁଅନ୍ତା ।

ଠାକୁର ଘରୁ ଆସି ବସୁଧା ସାମାନ୍ୟ ଟିକିଏ ଜଳଖିଆ କରି ଖଣ୍ଡିଏ ବହି ମେଲେଇ ପଢ଼ିବାକୁ ବସିଲା । ପଢ଼ାରେ ମନ ଲାଗୁ ନ ଥାଏ, କିନ୍ତୁ ଉପାୟ ନାହିଁ । ରବିକାନ୍ତ ସକାଳେ ପ୍ରାତଃ ଭ୍ରମଣରେ ଯାଏ ସତ, କିନ୍ତୁ ଏତେ ତ ଡ଼େରି କରେନା ।

ଏହି ସମୟରେ ମଚ୍ ମଚ୍ ଶବ୍ଦ ଶୁଣି ଶଯ୍ୟାରୁ ଉଠିଲା ବସୁଧା । ରବିକାନ୍ତ ଆସିଛି । ଅଶ୍ୱାରୋହୀର ପୋଷାକ ଦେହରେ ।

ଭ୍ରମର ଆଜି ଏତେ ଡେରି କାହିଁକି ?—

ଆଜି ଅନେକ ଦୂର ଚାଲି ଯାଇଥିଲି ।···କହୁ କହୁ ସାମ୍ନା ଚେୟାରରେ ବସିପଡ଼ି ପୋଷାକପତ୍ର ଖୋଲିବାକୁ ଲାଗିଲା ରବିକାନ୍ତ ।

ବସୁଧା ଉଠିଯାଇ ରବିକାନ୍ତ ପାଇଁ ଗରମ ପାନୀୟ ଆଣିବାକୁ ଗଲା । ସେ ପାନୀୟ ନେଇ ଫେରିଲା ବେଳକୁ ରବିକାନ୍ତ ପୋଷାକ ପତ୍ର ଖୋଲି ଶଯ୍ୟାଟି ଉପରେ ଲମ୍ବ ହୋଇ ପଡ଼ିଛି । ବସୁଧା ବୁଝି ପାରିଲା ରବିକାନ୍ତ ଖୁବ୍ କ୍ଳାନ୍ତ । ସେ ପାନୀୟ ଗିଲାସଟିକୁ ବଢ଼ାଇ ଦେଇ ଦେଇ କହିଲା—ଉଠ, ଖାଇନିଅ···

ଅର୍ଦ୍ଧଶାୟିତ ଅବସ୍ଥାରେ ଥାଇ ରବିକାନ୍ତ ଗିଲାସଟିକୁ ନେଇ ପାନ କରିବାକୁ ଲାଗିଲା । ପାନାନ୍ତେ ପୁଣି ଶଯ୍ୟାରେ ପଡ଼ିବା ଦେଖି ବସୁଧା ତାର ଗୋଡ଼ପାଖରେ ବସି ଧୀରେ ଧୀରେ ପାଦ ଦୁଇଟି ଉପରେ ହାତ ବୁଲାଇବାକୁ ଲାଗିଲା ।

ରବିକାନ୍ତ ବସିଲା ।

କଣ ହେଲା ? ହସିଲ କାହିଁକି ?···ବସୁଧା ହସି ହସି ପଚାରିଲା ।

Digitized by srujanika@gmail.com

ତୁମର ପତ୍ନୀସେବା ଦେଖି···ଆଚ୍ଛା, ବନ୍ଧୁ ! ସେଦିନର କଥା ମନେଅଛି ନା ? ଯେଉଁଦିନ କମନରୁମ୍‌ରେ ବସି ମୁହଁଟାକୁ ଶୁଖାଇ ମୋ ପାଖରୁ ବିଦାୟ ନେବାକୁ ଆସିଥିଲ ? ସେତେବେଳେ କିନ୍ତୁ ଭାରି ସୁନ୍ଦର ଦେଖା ଯାଉଥିଲ ତୁମେ ।

ତମେ ବି କିଛି କମ୍ ସୁନ୍ଦର ଦେଖା ଯାଉଥିଲ ।···ବସୁଧା କହିଲି – ତୁମର ତ ଛାଡ଼ିବାର ଇଚ୍ଛା ନଥିଲା । କମନ୍ ରୁମ୍‌ରେ ଯଦି ସେ ଦିନ କେହି ନ ଥାନ୍ତେ ତୁମେ ମୋତେ କଣ କରିଥାନ୍ତ କେଜାଣି । ଷ୍ଟେସନ ପର୍ଯ୍ୟନ୍ତ ତ' ଦୌଡ଼ିଥିଲ ।

ଅସ୍ୱୀକାର କରିବି ନାହିଁ ବନ୍ଧୁ ! ମୁଁ ତୁମପ୍ରତି ବଡ଼ ଅନୁରକ୍ତ ହୋଇ ପଡ଼ିଥିଲି । ବାସ୍ତବିକ କଣ କରିଥାନ୍ତି ତାହା କହି ହୁଏନା । ତେବେ, ତୁମର ଗୋଟାଏ କଥାରେ ମୁଁ ଅତିଶୟ ନିଶ୍ଚିନ୍ତ ଥିଲି । ···କହିଲା ରତିକାନ୍ତ ।

ବିବାହ ଦିନ ତୁମର ସେଠାକୁ ଯିବାପାଇଁ ନିମନ୍ତ୍ରଣ କଲ, ମନେହେଲା ସେଦିନ ତୁମେ କିଛି ଗୋଟାଏ କାଣ୍ଡ କରି ବସିବ । ହୁଏତ ତୁମେ ମୋତେ ନିଭୃତରେ ଡ଼ାକି ଜୀବନ ସଙ୍ଗିନୀ କରିବା ଲାଗି ଅନୁରୋଧ କରିବ, ଏଇକଥା ମୁଁ ଭାବିଥିଲି । ମୋର ଆପତ୍ତି ନଥିଲା, କିନ୍ତୁ ଭୟ ଥିଲା ବାବାଙ୍କୁ । ତେବେ ସୁଦ୍ଧା ମୁଁ ଭଲକରି ଜାଣେ ମୁଁ ଯାହା କରିବି ତାହା କୁଳ-ଦ୍ରୋହିତା ନୁହେଁ, ବଂଶର ମର୍ଯ୍ୟାଦା ହାନିକର ନୁହେଁ- -ତଫାତ୍ କେବଳ ଧନୀ ଦରିଦ୍ର ମଧ୍ୟରେ । ବାବା ନିଶ୍ଚୟ ମୋର ମତର ବିରୁଦ୍ଧରେ ଯାଆନ୍ତେ ନାହିଁ । ବିଶେଷତଃ ରାଜକୁମାରୀ ପରି ଯାହାର ରୂପ, ସମ୍ଭ୍ରାନ୍ତ ପରିବାର ପରି ଯାହାର ବ୍ୟବହାର, ଆଧୁନିକ ଆଲୋକ-ପ୍ରାପ୍ତା ଶିକ୍ଷିତା ତରୁଣୀ ନିଶ୍ଚୟ ତାଙ୍କର କଠିନ ହୃଦୟକୁ ଜୟ କରି ପାରିବ, ଏ ଧାରଣା

Digitized by srujanika@gmail.com

ମୋର ସେତେବେଳେ' ହୋଇଥିଲା । ଆଚ୍ଛା, ତୁମେ କଅଣ ଭାବିଥିଲ ବନ୍ଧୁ !···

ବସୁଧା ତଳକୁ ମୁହଁ ପୋତି କହିଲା—ମୋର ମନକଥା ଭଗବାନ ଜାଣନ୍ତି । ଜାଣିଥିଲେ ବୋଲି ମୋତେ ସେ ଲଜ୍ଜାକର ପରିସ୍ଥିତିରୁ ମୁକ୍ତି ଦେଇଛନ୍ତି । ଛାଡ଼, ଯାଅ' ଗାଧୁଆ ପାଧୁଆ ସାର, ବେଳ ଅନେକ ହୋଇଛି । ଖାଇସାରି ତୁମକୁ ଗୋଟିଏ କାମ କରିବାକୁ ହେବ ।

କି କାମ ?—ତୁମର କିଛି ସେବା ?···

ନା-ନା, ସେବା ତ ମୋର କରିବାର କଥା । ଚିରଦିନ ଯେପରି ତୁମର ସେବାକରି ତୁମରି ଆଗରେ ଯାଇପାରେ, ଭଗବାନ ସେତିକି ଦୟା କରନ୍ତୁ । ମୁଁ କହୁଥିଲି, ବାବାତ' ଅନେକ ଦିନ ହେଲା ଗଲେଣି, ଖଣ୍ଡିଏ ଚିଠି ବି ଦେଲେ ନାହିଁ, ତୁମେ ଟ୍ରଙ୍କ-କଲ୍ କରି ତାଙ୍କ ଖବର ଟିକିଏ ବୁଝ···

ଠିକ୍ ତ !···ଆଚ୍ଛା ଆଗେ ବୃକ୍‌ଠା କରିଦିଏ—ତାପରେ ଗାଧୋଇବାକୁ ଯିବି···

ରତିକାନ୍ତ ଉଠୁଛି, ହଠାତ୍ ଶୁଣିପାରିଲା କାର୍‌ର ଶବ୍ଦ । ପ୍ରଶ୍ନିଳ ଦୃଷ୍ଟିରେ ସେ ଚାହିଁଲା ବସୁଧା ଆଡ଼େ । ବସୁଧା ମଧ୍ୟ ବିସ୍ମିତ ହୋଇଥିଲା ରାଜବାଟୀ ଭିତରେ କାର୍‌ର ହର୍ନ ଶୁଣି । ଏ ଯେ ପରିଚିତ ହର୍ନର ଶବ୍ଦ ନୁହେଁ । ତେବେ ଅସମୟରେ କିଏ ଆସିଛନ୍ତି ?—

ଉଭୟେ ବାହାରକୁ ଆସିଲେ । ସେମାନେ ଏ କଣ ଦେଖୁଛନ୍ତି ? କାର୍ ପାଖରେ ରାଜବାଟୀର କେତେକ ଭୃତ୍ୟ ଛିଡ଼ା ହୋଇଛନ୍ତି, ଆଉ କେତେଜଣ କାର୍ ଭିତରୁ ଆଣୁଛନ୍ତି ରାଜା-ସାହେବଙ୍କୁ ।

Digitized by srujanika@gmail.com

କଣ ହେଲା ? ··· ବସୁଧା ମୃଦୁସ୍ୱରରେ କହିଲା ରତିକାନ୍ତଙ୍କୁ ।

ଦେଖୁଛି···କହି କାର୍ ପାଖକୁ ଆସିଲା ରତିକାନ୍ତ । ସେତେବେଳକୁ ଦୁଇଜଣ ଭୃତ୍ୟ ରଜାସାହେବଙ୍କୁ କାରରୁ ଓହ୍ଲାଇ ତାଙ୍କୁ ଧରି ଧରି ଅତି ସାବଧାନରେ ଭିତରକୁ ଆଣିବାକୁ ଲାଗି-ଥାନ୍ତି । ରତିକାନ୍ତ ରଜାସାହେବଙ୍କର ନିକଟବର୍ତ୍ତୀ ହୋଇ ତାଙ୍କୁ ଭିତରକୁ ଆଣି ଶଯ୍ୟାରେ ଶୁଆଇ ଦେଇ କହିଲା—ବସୁଧା, ତୁମେ ବାବାଙ୍କ ପାଖରେ ଥାଅ, ମୁଁ ଡାକ୍ତରକୁ ଫୋନ୍ କରି ଆସେ···

ବସୁଧା ରଜାସାହେବଙ୍କ ମୁଣ୍ଡ ପାଖରେ ବସି ମୁଣ୍ଡର ବାଳ ଗୁଡ଼ିକୁ ଧୀରେ ଧୀରେ ଆଉଁସିବାକୁ ଲାଗିଥାଏ । ରଜାସାହେବ ଆଖି ବୁଜି ପଡିଥାନ୍ତି, କି ଗୋଟାଏ ଯନ୍ତ୍ରଣା ଯେ ସେ ଭିତରେ ଭିତରେ ଅନୁଭବ କରୁଛନ୍ତି ତାହା ଜଣା ପଡୁଥାଏ ।

ଇତି ମଧ୍ୟରେ ବସୁଧା ଦୁଇ ତିନଥର 'ବାବା ବାବା' ବୋଲି କହି ଡାକି ସାରିଲାଣି । ରଜାସାହେବ ଉତ୍ତର ଦେବା ପାଇଁ ଚେଷ୍ଟା କରୁଛନ୍ତି, କିନ୍ତୁ ଚେଷ୍ଟା ତାଙ୍କର ବିଫଳ ହେଉଥାଏ । ବସୁଧା ତାହା ବୁଝିପାରି ଆଉ ଡାକିଲା ନାହିଁ ।

ରତିକାନ୍ତ ଫେରି ଆସି କହିଲା—ଡାକ୍ତର ସାମନ୍ତରାୟ ଆସୁଛନ୍ତି···

ସେ ବସିବାକୁ ଯାଉଥିଲା, ବସୁଧା ବାଧାଦେଇ କହିଲା—ନା, ତୁମେ ଆଉ ବସନା । ଯାଅ, ଗାଧୁଆ ପାଧୁଆ ସାରି ଖିଆପିଆ କରିଆସ--ମୁଁ ବସିଛି । ଡାକ୍ତରବାବୁ ଆସିଲେ ମୁଁ ତାଙ୍କ ପାଖରୁ ସବୁକଥା ବୁଝିନେବି ।

ଡାକ୍ତର ସାମନ୍ତରାୟ ବର୍ତ୍ତମାନ ଆସି ପହଞ୍ଚିବେ । ଘରୁ ସେ ବାହାରିଲେଣି । ସେ ଦେଖି ଯାଆନ୍ତୁ ମୁଁ ଯିବି ।···

Digitized by srujanika@gmail.com

ଘର ଭିତରେ ମୃତ୍ୟୁ ପରି ଶୀତଳ ସ୍ତବ୍ଧତା ।

ଅସହାୟ ଭାବେ ଶୋଇଥାନ୍ତି ରଜାସାହେବ । ବୁକୁର ସ୍ପନ୍ଦନ ଓ ମୁଖର ଯନ୍ତ୍ରଣା, କୁଞ୍ଚିତ ରେଖା ଗୁଡ଼ିକ ଫୁଲି ଉଠୁଥାଏ ।

ମେ ଆଇ କମ୍ ଇନ୍...

ପର୍ଦ୍ଦାର ବାହାରେ ଥାଇ ଡାକ୍ତର ସାମନ୍ତରାୟ କହିଲେ ।

ଆସନ୍ତୁ, ଡକ୍...

ବସୁଧା ଲୁଗାପଟା ସଜାଡ଼ି ଉଠି ଠିଆହେଲା । ରତିକାନ୍ତ ଡାକ୍ତରଙ୍କୁ ଅଭ୍ୟର୍ଥନା କରିବା ଲାଗି ପର୍ଦ୍ଦା ଆଡ଼କୁ ଆଗେଇ ଆସୁଥାଏ, ଡାକ୍ତର ଆସିଲେ ଭିତରକୁ ।

ନମସ୍କାର କଲା ବସୁଧା ।

ବସ ବୋହୂମା'—ମୁଁ ରଜାସାହେବଙ୍କୁ ଦେଖେ—

ମୃଦୁସ୍ୱରରେ ବସୁଧା କହିଲା—ଆପଣ ବାବାଙ୍କୁ ଦେଖନ୍ତୁ, ଯିବାବେଳେ କନ୍ତୁ କଫି ପିଇ ଯିବେ ।

ଆଚ୍ଛା ମା' ଯିବି...

ଡାକ୍ତର ତାଙ୍କର ପରୀକ୍ଷା ଆରମ୍ଭ କଲେ । ଔଷଧ ପତ୍ରର ବ୍ୟବସ୍ଥା କରି ରତିକାନ୍ତଙ୍କୁ ସମସ୍ତ କଥା ବୁଝାଇଦେଇ କହିଲେ— ଚାଲ, ବୋହୂମା' ତେଣେ ଅପେକ୍ଷା କରିଥିବେ ।

ଆପଣ ଯାଆନ୍ତୁ, ମୁଁ ଔଷଧ ପାଇଁ କାହାରିକୁ ପଠାଇ ଯାଉଛି...

ବସୁଧା ଅପେକ୍ଷା କରିଥିଲା । ଡାକ୍ତରଙ୍କୁ ଜଳଖିଆ ଦେଇ କଫି ତିଆରି କରୁ କରୁ କହିଲା—କପରି ଦେଖିଲେ ଡାକ୍ତରବାବୁ !—

ଠି... ଖୁବ୍ ସାବଧାନରେ ଚଳିବାକୁ ହେବ, ବୋହୂମା ! ... ହେଲେ ଭଲ ନୁହେଁ । ତେବେ, ଯେଉଁ ଔଷଧ ଲେଖି ଦେଇଛି, ହୁଏତ ଚବିଶ ଘଣ୍ଟା ଭିତରେ ଜ୍ଞାନ ଫେରି ଆସିପାରେ ।

Digitized by srujanika@gmail.com

ମାଝ ମୁଣ୍ଡରେ ପାଣିପଟି ଦେବାର ଯେପରି ବନ୍ଦ ନ ହୁଏ ଓ ଜ୍ଞାନ ଫେରି ଆସିଲେ ମଧ୍ୟ ରୋଗୀ ସହିତ ବିଶେଷ କଥାବାର୍ତ୍ତା କେହି କରିବେ ନାହିଁ କିମ୍ବା ତାଙ୍କୁ କିଛି କହିବାର ସୁଯୋଗ ଦେବେ ନାହିଁ।...ଟେମ୍ପରେଚରଟା ନୋଟ୍ କରୁଥିବ, ମା !

ବସୁଧା ହଁ ଭରିଲା । ରତିକାନ୍ତ ଆସିଲା, ତାକୁ ମଧ୍ୟ ସମସ୍ତ ବିଷୟ ବୁଝେଇ ଦେଲେ ଡାକ୍ତର ସାମନ୍ତ ।

ଡାକ୍ତର ସାମନ୍ତ ଯିବାପରେ ବସୁଧା ତାର ଭୃତ୍ୟା ରୁକ୍ମଣୀକୁ ଡାକି ରାଜାସାହେବଙ୍କ ଲଲାଟରେ ପାଣିପଟି ଦେବାର ବନ୍ଦୋବସ୍ତ କଲା । ରତିକାନ୍ତକୁ କହିଲା—ଚାଲ ଶୀଘ୍ର, ଖିଆପିଆ ଶେଷ କରି ନେବା । ରୁକ୍ମଣୀକୁ ରିଲିଭ୍ କରିବାକୁ ହେବ । ସେ ବିଚାରି ଆଉ କେତେ ସମୟ ଯାଏ ବସିପାରେ ।

ତିନିଦିନ ଗତ ହେଲା, ରାଜାସାହେବଙ୍କର ଜ୍ଞାନୋଦୟ ହେଲା ନାହିଁ । ଏହି ତିନିଦିନ ଯାଏ ଯମ ମନୁଷ୍ୟ ଭିତରେ ଯୁଦ୍ଧ ଚାଲି ଶେଷରେ ପରାଜୟ ଘଟିଲା ମନୁଷ୍ୟର । ବସୁଧାର ପରିଶ୍ରମ ଓ ତହିଁ ସଙ୍ଗେ ତିନିରାତି ତିନିଦିନର ଅନିଦ୍ରାଜନିତ କଷ୍ଟ, ରତିକାନ୍ତର ମାନସିକ ଦୁଃଶ୍ଚିନ୍ତା, ଅଜସ୍ର ଅର୍ଥବ୍ୟୟ ଏବଂ ଡାକ୍ତରଙ୍କର ବିଦ୍ୟା ବୁଦ୍ଧି, ଏ ସମସ୍ତକୁ ବୁଢ଼ାଙ୍ଗୁଠି ଦେଖାଇ ମୃତ୍ୟୁଦୂତମାନେ ବିରାଟ ପୁରୁଷଟିକୁ ସମସ୍ତଙ୍କର ଅଲକ୍ଷ୍ୟରେ ଘେନିଗଲେ ତାଙ୍କର ଅତିଥି ଭବନକୁ ।

ବସୁଧାର ଅବସ୍ଥା କହିଲେ ନସରେ । ମୁହଁ ମାଡ଼ି ଶଯ୍ୟାରେ ପଡ଼ିଛି ତ ପଡ଼ିଛି । କଦାଚି ବାଧ ବାଧକତାରେ ଉଠି ଯାହା ଟିକିଏ ମୁହଁରେ ଦିଏ, ତାହା ପେଟ ଭିତରକୁ ଯାଏ କି ନା ସନ୍ଦେହ । ରତିକାନ୍ତ ଅବଶ୍ୟ କେତେକ ପରିମାଣରେ ସହଜ ହୋଇ ଆସିଛି ।

Digitized by srujanika@gmail.com

ଶ୍ରାଦ୍ଧ କର୍ମ ମହାସମାରୋହ ସହ ଶେଷ ହେଲା ।

କ୍ରମେ କ୍ରମେ ସମସ୍ତ ଏକପ୍ରକାର ସ୍ୱାଭାବିକ ଅବସ୍ଥାକୁ ଆସିଲା । ରତିକାନ୍ତଙ୍କୁ ଏଥର ଅଫିସ ଘରେ ବସି କାଗଜପତ୍ର ଦେଖିବାକୁ ପଡ଼ିଲା । ବୃଦ୍ଧ ଗୁମାସ୍ତା ଶଙ୍କର ବାବୁ ବିଷୟ ସମ୍ପତ୍ତିର କାଗଜ ନେଇ ସମସ୍ତ ବିଷୟ ବୁଝାଇଲେ ।

ମନେହେଲା ରତିକାନ୍ତ ସିରସ୍ତା ପାଇ ଖୁବ୍ ଖୁସି ହୋଇଛନ୍ତି । ସକାଳ ନଅଟାରୁ ବାରଟା ପର୍ଯ୍ୟନ୍ତ ସିରସ୍ତା କାର୍ଯ୍ୟ କରି ଘରକୁ ଆସେ, ସାମାନ୍ୟ ବିଶ୍ରାମ ନେଇ ପୁଣି ତିନଟା ବେଳକୁ ଅଫିସ ଯାଏ, ଫେରେ ରାତି ଆଠଟାରେ, ସେତେବେଳେ ତାକୁ ଖୁବ୍ କ୍ଳାନ୍ତ ଦେଖାଯାଉଥାଏ । ବସୁଧା ପଚାରେ, ତୁମେ ଏତେ ପରିଶ୍ରମ କରନା, ବଡ଼ ଦୁର୍ବଳ ହୋଇ ପଡ଼ୁଛ । ତୁମର ପ୍ରତିଦିନ ଘୋଡ଼ାରେ ଚଢ଼ି ସକାଳେ ସନ୍ଧ୍ୟାରେ ବୁଲାବୁଲି କରିବା କଥା । ସେତକ ତ ହୋଇ ପାରୁନାହିଁ । ସ୍ୱାସ୍ଥ୍ୟ ଏଥିରେ ଖରାପ ହୋଇଯିବ ନାହିଁକି ?

କଣ ଆଉ କରାଯାଏ...ହସି ହସି କୁହେ ରତିକାନ୍ତ ।... ବାପର ଏକମାତ୍ର ପୁଅ ହେଲେ ସମସ୍ତ ଦାୟିତ୍ୱ ଜଣକ ମୁଣ୍ଡରେ ପଡ଼େ । ପ୍ରଜାମାନେ ଆପତ୍ତି ଅଭିଯୋଗ କଲେ ମୋ ଛଡ଼ା ତ ଆଉ କେହି ଶୁଣିବାକୁ ନାହିଁ । ବାବା ଖୁବ୍ ସମ୍ଭାଳିଥିଲେ ଦେଖୁଛି । ଏ ବୟସରେ ସିଏ ଯେ ଏତେ ପରିଶ୍ରମ କରୁଥିଲେ, ଏହାହିଁ ମୋତେ ଆଶ୍ଚର୍ଯ୍ୟ ଲାଗୁଛି ।

ବସୁଧା ସହିତ ପରାମର୍ଶ କରି ଓ ଗୁମାସ୍ତା ଶଙ୍କର ବାବୁଙ୍କର ମତ ନେଇ ବୋମ୍ବାଇର ମିଲ୍ ବିକ୍ରୟ କରିଦେଲା ରତିକାନ୍ତ । ଶଙ୍କର ବାବୁ କହିଲେ—ମୁଁ ରାଜାସାହେବଙ୍କୁ ଏ ମିଲ୍‌ଟା ନ ନେବାପାଇଁ କହିଥିଲି, ମାତ୍ର ସେ ମୋ କଥା ନଶୁଣି ଖୁବ୍ ଜୋରରେ ପାଉଛନ୍ତି ଓ ବିଶେଷ ଲାଭର ସମ୍ଭାବନା ଅଛି ବୋଲି କହିଥିଲେ । ଯାହାହେଉ ଟଙ୍କାଟା ତୁମେ ଜମିଦାରୀର ଆୟ ସହିତ ନ ମିଶାଇ

Digitized by srujanika@gmail.com

ରାଜାସାହେବଙ୍କର ଅନେକ ଦିନର ଆଶାଟିକୁ ପୂରଣ କରିବାରେ ବ୍ୟସ୍ତକର ।...

ବସୁଧାର ଉପସ୍ଥିତରେ ଉଭୟଙ୍କର କଥାବାର୍ତ୍ତା ହେଉଥିଲା । ଶଙ୍କରବାବୁଙ୍କର କଥା ଶୁଣି ବସୁଧା କହିଲା—ରାଜାସାହେବଙ୍କର କି ଉଦ୍ଦେଶ୍ୟ ଥିଲା, କକା !

ଶଙ୍କରବାବୁଙ୍କୁ ବସୁଧା ଖୁବ୍ ଭକ୍ତି ଶ୍ରଦ୍ଧା କରେ ଓ ତାଙ୍କୁ "କକା" ବୋଲି ଡାକେ । ବସୁଧା ତାଙ୍କୁ ନିଜଘରେ ବସାଇ ଗ୍ଧ' ପରିବେଷଣ କରୁ କରୁ ପ୍ରଶ୍ନ କଲା । ଶଙ୍କରବାବୁ ହସି ହସି କହିଲେ—ତୁମର ଦ୍ୱାରା ସେ କାମଟି ହୋଇ ପାରିବ, ମା ! ରାଜା-ସାହେବ ଶେଷ ପର୍ଯ୍ୟନ୍ତ ତୁମର ପ୍ରଶଂସା କରୁଥିଲେ । କହୁଥିଲେ, ଭାଗ୍ୟରେ ଥିଲେ ଏପରି କୁଳଲକ୍ଷ୍ମୀ ମିଳେ । କଥା ହେଉଛି, ଅନେକ ଦିନୁ ଏଠାରେ ଗୋଟିଏ ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠା କରିବାର ଇଚ୍ଛା ଥିଲା । ଅବଶ୍ୟ ସେ ସେତେବେଳେ କରିପାରି ଥାନ୍ତେ ମାତ୍ର ହେଳାରେ ହେଳାରେ ତାହା କରିପାରି ନାହାନ୍ତି । ଯଦି ଏହି ଠାରେ ଗୋଟିଏ ବିଦ୍ୟାଳୟ କରିପାରନ୍ତ' ଅନେକ ଛାତ୍ର ଉପକୃତ ହୁଅନ୍ତେ ।

ବସୁଧାର ଆଖି ଦୁଇଟି ଉଜ୍ଜ୍ୱଳ ହୋଇ ଉଠିଲା । କହିଲା—ବେଶ୍, ସେଇକଥା କରଯାଉ···ତା'ପରେ ରତିକାନ୍ତ ଆଡ଼େ ଚାହିଁ କହିଲା, ତୁମେ କଣ କହୁଛ ?

ମୁଁ ଏଥିରେ ଏକମତ । ତେବେ ଆପଣ ଶୀଘ୍ର ସ୍ଥାନଟା ଠିକ୍ କରି କାର୍ଯ୍ୟ ଆରମ୍ଭ କରିଦିଅନ୍ତୁ । ବୋଧହୁଏ ଛ' ମାସ ଭିତରେ ଘରଟା କମ୍ପ୍ଲିଟ୍ ହୋଇପାଇ ପାରେ । ଅନ୍ୟାନ୍ୟ ଉପକରଣ ଯାହା ଦରକାର ସେଗୁଡ଼ିକର ମଧ୍ୟ ବ୍ୟବସ୍ଥା କରିବେ ଏବଂ ଶିକ୍ଷକ ଦରକାର ବୋଲି ବିଜ୍ଞାପନ ମଧ୍ୟ ଦେଇଥିବେ ।



Digitized by srujanika@gmail.com

ସବୁ ହେଲା । ସ୍କୁଲଟିର ନାମ-କରଣ ହେଲା "ସତ୍ୟଭାମା" ଉଚ୍ଚ ବିଦ୍ୟାଳୟ । ବସୁଧାର ଅନୁରୋଧରେ ଶଙ୍କରବାବୁ ହେଲେ ବିଦ୍ୟାଳୟର ସେକ୍ରେଟରୀ । ବିଦ୍ୟାଳୟର ନାମ-କରଣ ନେଇ କେତେଜଣ ବିଭିନ୍ନ ନାମର ଉଲ୍ଲେଖ କରିଥିଲେ, କିନ୍ତୁ ବସୁଧା ତାର ସିଦ୍ଧାନ୍ତରେ ଅଟଳ । ତାର ଇଚ୍ଛା, ଶାଶୁଙ୍କ ନାମାନୁସାରେ ବିଦ୍ୟାଳୟର ନାମକରଣ ହେଉ । ସେହି ଅଦେଖା ସତୀ ସାଧ୍ୱୀ, ତାର ଶାଶୁ, ବିଶେଷ ଜନନୀର ସ୍ମୃତିକୁ ସେ ଚିର ଜାଗ୍ରତ କରିବାକୁ ଚାହେଁ । ଶେଷରେ ଜୟ ହେଲା ତାର । ବିଦ୍ୟାଳୟ ସମ୍ମୁଖରେ ଛୋଟ ମନ୍ଦିରଟିଏ କରି ତହିଁରେ ସ୍ଥାପିତ ହେଲା 'ସତ୍ୟଭାମା'ଙ୍କର ମାର୍ବଲ ପ୍ରସ୍ତର ନିର୍ମିତ ପ୍ରତିମୂର୍ତ୍ତି । ପ୍ରତିଷ୍ଠା ଦିନ ଉପବାସ ରହି ବସୁଧା ଶୁଭକାର୍ଯ୍ୟ ସମାପନ କରି ପରେ ମୂର୍ତ୍ତି ଗଳାରେ ତୁଳସୀ ମାଳା ଓ ପାଦରେ ପୁଷ୍ପାଦି ଅର୍ପଣ କରି ପରେ ପୂଜା ସମାପନାନ୍ତେ ଜଳ ଗ୍ରହଣ କଲା ।

ବସୁଧାର ପ୍ରଶଂସା ଚାରିଆଡ଼େ ଖେଳିଗଲା ।

ସବୁ ହେଲା, ଯଥା ସମୟରେ ଭାଗ୍ୟବତୀ ବସୁଧା ପୁତ୍ର ସନ୍ତାନର ଜନନୀ ମଧ୍ୟ ହେଲା—ରତିକାନ୍ତ ସ୍ନେହ ଓ ପ୍ରେମର ସଂସାରଟି ମୁଖରିତ ହୋଇ ଉଠିଲା ।

କିନ୍ତୁ, ନିୟତି—

ଅଲକ୍ଷ୍ୟରେ ଥାଇ ସେ ସବୁ ଦେଖୁଥିଲା । ଏତେ ସୁଖ ବୋଧହୁଏ ସେ ସହି ପାରିଲା ନାହିଁ । ଦୀର୍ଘ ଦିନର ସ୍ନେହ, ପ୍ରେମ, ବାତ୍ସଲ୍ୟତାକୁ ତୁଚ୍ଛ କରି ସେ ତାର ବିଜୟ ବୈଜୟନ୍ତୀ ଉଡ଼ାଇବାକୁ ଲାଗିଲା ।

Digitized by srujanika@gmail.com

ଶିଶୁ ଉମାକାନ୍ତ ସେତେବେଳେ "ଅ-ଆ-କ-ଖ" ଆରମ୍ଭ କରିଛି ।

ବସୁଧାର ଚିନ୍ତାର ଅଭାବ ନାହିଁ । କଣ ହେଲା ରତିକାନ୍ତର ! ଯାହାଁକ ସେ ଏପରି ବଦ୍-ଖେୟାଲୀ କାମ କରୁଛି । ଯାହା କୌଣସି ଦିନ ସେ ଆଶଙ୍କା କରି ନ ଥିଲା, ସେହି ଆଶଙ୍କା ଆସି ଦେଖା-ଦେଇଛି ତା' ଭାଗ୍ୟରେ ।

ଡାହାଣ ହାତଟି ଆଉଡ଼ି ଗୁହିଁଲା ବସୁଧା । କାଲି ରାତିରେ ରାଗରେ ଚୂଡ଼ିଟାକୁ ଭାଙ୍ଗି ଦେଇଛି ରତିକାନ୍ତ । ରାତି ଦୁଇଟାବେଳେ ଘରକୁ ଫେରିଲା ସେ । ସେତେବେଳକୁ ପୁଅକୁ ଖୁଆଇ ପିଆଇ ଶୁଆଇ ଦେଇ ନିଜେ ନ ଖାଇ ରତିକାନ୍ତର ଅପେକ୍ଷାରେ ବସିଥାଏ ବସୁଧା । ବସି ଚିନ୍ତା କରୁଥାଏ, ସେ ଯାହା ଶୁଣି ପାରୁଛି ତାହା କି ସତ ! ରତିକାନ୍ତ ଆଜିକାଲି ସିରସ୍ତା କାମ ଛାଡ଼ି ଅଧିକାଂଶ ସମୟରେ ନାଚ-ମହଲରେ ଆସି ଆଡ୍ଡା ଦେଉଛି । ବନାରସରୁ କିଏ ଜଣେ ସୁନ୍ଦରୀ ସୁଗାୟିକା ନର୍ତ୍ତକୀ ଆସିଛି । ନାଚ ମହଲ ଦିନରାତି ସରଗରମ ।

ରାତି ସେତେବେଳେ ଦୁଇଟା । ମତ୍ତ ଅବସ୍ଥାରେ ଫେରିଲା ରତିକାନ୍ତ । ଆଗେ ଘରକୁ ଆସିଲେ ଘୁମନ୍ତ ଉମାକାନ୍ତକୁ ବହେ ଗେଲ କରି ତା' ପରେ ଖାଇବାକୁ ବସେ, ମାତ୍ର କେତେଦିନ ହେଲା ପୁଅକୁ ଗେଲ କରିବା ଦୂରେ ଥାଉ, ଶଯ୍ୟା ପାଖକୁ ଆସିବାର ଭୁଲି ଯାଇଛି । ଆସିବା ମାତ୍ରେ ଆରାମ ଚୌକିଟାରେ ବସିପଡ଼ି ନ ଖାଇ ନ ପିଇ ସାରା ରାତି ଶୋଇଛି ଆରାମ ଚେୟାରଟିରେ । ବସୁଧା ଡାକିଲେ ହାତକୁ ମାରି ଛୁଆଁଡ଼ ଦେଉଛି ବାଇ କୁହେ—ଲିଭ୍ ମି ଲିଭ୍ ମି ଏଲୋନ୍...

Digitized by srujanika@gmail.com

କି ଗୋଟାଏ ଗନ୍ଧ ବସୁଧାର ନାକରେ ଆସି ବାଜେ । ଗନ୍ଧଟା ଯେ କଣ ଠିକ୍ ବାରିପାରେନା ବସୁଧା । ସିରିଷ୍ଟାଙ୍କୁ ଯିବା ଦିନରୁ ପଢ଼ା ପଢ଼ିରେ ଡ଼ୋର ବନ୍ଧା ହୋଇଛି । ଅବଶ୍ୟ ଆଉ ପଢ଼ିବା କ'ଣ ଦରକାର ହେବ ? ସେ ମଧ୍ୟ ଘୁଞ୍ଚିଛି । ଉମାକାନ୍ତଙ୍କୁ ଧରିଛି ଜାବୋଡ଼ ।

ରୁକ୍ମଣୀ ପାଖରେ ପୁଅକୁ ରଖି ଘଣ୍ଟା ଘଣ୍ଟା ଧରି ସ୍ୱାଜା-ଖାହେବଙ୍କ ଫଟୋ ପାଖରେ ବସି ଅଶ୍ରୁ ସଜଳ କଣ୍ଠରେ ସେ କହୁଛି—ଏ କଣ ହେଲ ବାବା, ଏ କଣ ହେଲ ! ତୁମେ କି ସ୍ୱର୍ଗରେ ଥାଇ ପୁଅର କାନ୍ଦି ଦେଖି ପାରୁନାହଁ ? ସତ୍ୟଭାମାଙ୍କର ପ୍ରତିକୃତି ପାଖରେ ବସି କୁହେ——ମା ! ତୁମର ପାଖକୁ ମୋତେ ନେଇଯାଅ । ମୁଁ ଆଉ ସହ୍ୟ କରି ପାରେନା ।

ଶମିତା ପାଖରୁ ଦୁଇ ତିନଥର ଚିଠି ଆସିଲାଣି । ସେ ଯିବା ପାଇଁ ଅନୁରୋଧ କରିଛି । ଭଉଣୀ ଓ ଉମାକୁ ନେଇ ତୁମେ ଆସ··· ମାତ୍ର, ସେ ଯିବ କେମିତି ? କଣ ସେ ଉତ୍ତର ଦେବ ତାହା ମଧ୍ୟ ଠିକ୍ କରି ପାରିନାହିଁ ।

ଉମାକାନ୍ତଙ୍କୁ ଶୁଆଇ ଦେଇ ତା ଦେହରେ ହାତ ବୁଲାଉ ବୁଲାଉ ବେଦନାର୍ତ୍ତ କଣ୍ଠରେ କୁହେ—ଚୌଧୁରୀ ବଂଶର ପ୍ରଦୀପ ତୁ ! ନିଜର ତେଜରେ ଦୀପ୍ତିମାନ ହୋଇ ସମସ୍ତଙ୍କୁ ଆଲୋକ ଦାନ କର ବାବା !

ରୁକ୍ମଣୀ ଯେ ରତିକାନ୍ତର ପରିବର୍ତ୍ତନ ଲକ୍ଷ୍ୟ ନ କରିଛି, । ଏପରି ନୁହେଁ । ସେ ମଧ୍ୟ ବୁଝିପାରେ ବସୁଧାର କୌଣସି କଥା ଅଜାଣିତ ନୁହେଁ । କିନ୍ତୁ ଭରସା କରି କିଛି କହି ପାରେନା । ସେ ଦିନ ... ସେ କହି ପକାଇଲା । ବସୁଧା ଉମାକାନ୍ତଙ୍କୁ ଶୁଆଇ ଦେଇ

Digitized by srujanika@gmail.com

ପାଖରେ ବସିଥାଏ, ଏହି ସମୟରେ ରୁକ୍ମଣୀ ଗ୍' କପ୍ ଟିକୁ ନେଇ ଆସି କହିଲା—କାହିଁକି ତୁମେ ଡ଼ାକ୍ତରଙ୍କୁ ଖବର ଦେଉ ନାହଁ, ବୋହୂରାଣୀ ! ତିନଦିନ ହେଲା ଜର ହେଲଣି— ଟୋପାଏ ଔଷଧ ନ ପଡ଼ିଲେ ଜରଟା ବଢ଼ାବଢ଼ି ଧରିପାରେ ।—ମୁଁ ଯାଉଛି ଗୁମାସ୍ତା ବାବୁଙ୍କୁ କହି ଡ଼ାକ୍ତରବାବୁଙ୍କୁ ଡ଼ାକ ଦେବାକୁ କହିବି ।—

· କ ଗୋଟାଏ ଶବ୍ଦ ଶୁଣାଯାଉଛି ନା ? କାନ ଡେ଼ରିଲା ବସୁଧା । ଶବ୍ଦଟା ଆହୁରି ପରିଷ୍କାର ହେଲା । ଜଡ଼ିତ କଣ୍ଠରେ ଖଣ୍ଡିଏ ଗୀତ ଗାଇ ଗାଇ ଆସୁଛି ରତିକାନ୍ତ । ପର୍ଦ୍ଦା ଆଡ଼େଇ ସେ ଭିତରକୁ ଆସିଲା । ବସୁଧା ଦେଖିଲା ଗୋଡ଼ ଟଳୁଛି, ପଡ଼ୁ ପଡ଼ୁ କାନ୍ଥ, ଦରଜା ଧରି କୌଣସି ପ୍ରକାରେ ପତନୋନ୍ମୁଖରୁ ନିଜକୁ ରକ୍ଷା କରୁଛି । କେବେହେଲେ ଭୁଲରେ ସେ ଗୃହଁ ନାହିଁ ବସୁଧା ଆଡ଼େ ।

ତାର ସେହି ନିର୍ଦ୍ଦିଷ୍ଟ ଆରାମ ଚେୟାରଟିରେ ବସି ଶରୀରଟାକୁ ଲମ୍ବାଇ ଦେଇ ବଡ଼ ବଡ଼ ହୋଇ କଣ ଗୁଡ଼ାଏ ବକିବାକୁ ଲଗିଲା ରତିକାନ୍ତ, ବସୁଧା କିଛିହେଲେ ବୁଝି ପାରିଲା ନାହିଁ । କେବଳ ପରି ଗୃହିଁଥାଏ କେବଳ ।

କିଛିକ୍ଷଣ ସ୍ତବ୍ଧତା । ବସୁଧା ଭାବିଲା ରତିକାନ୍ତ ନିଶା ଝୁଙ୍କରେ ଢାଲେଇ ପଡ଼ିଲା ବୋଧହୁଏ । କିନ୍ତୁ ପରମୁହୂର୍ତ୍ତରେ ପୁଣି ତାର ଜଡ଼ିତ କଣ୍ଠସ୍ୱର ଶୁଣାଗଲା—ନୋ-ନୋ-ନୋ, ନାଚ ବନ୍ଦ କରନା—ନଯ଼ନା—ଟୋ ଅନ୍···ଓ୍ୟାନ୍-ଟୁ-ଥ୍ରୀ···ଆଜ ଗିଲାସେ ଦେବ ?—ବଅ—ବାଃ ଭାଇ—ବାଃ···ଏକ୍‌ସିଲେଣ୍ଟ···

ଆଉ କିଛି ଶୁଣାଗଲା ନାହିଁ । ନାସିକା ଗର୍ଜନ ଶୁଣି ଆଲୁଅଟାକୁ କମାଇ ଦେଇ ବେଡ଼୍ ସୁଇଚ୍ ଅନ୍ କରି ପୁଅ ପାଖରେ ଶୋଇପଡ଼ିଲା ବସୁଧା ।

Digitized by srujanika@gmail.com

କନ୍ତୁ ବସୁଧାର ଆଖିରେ ନିଦ୍ରା ନାହିଁ । ପେଟରେ କ୍ଷୁଧା, ମନ ଭିତରେ ଅଶାନ୍ତ ତେଜ ; ଯାହାର ଅବିରତ ଓଲଟ ପାଲଟ ହେଉଛି ନିଦ୍ରା କ ତାର ଆସିପାରେ ।?



ରୁକ୍ମଣୀ ସନ୍ଧାନରେ ଥିଲ' ସେ ଆସି ଖବର ଦେଲ ବସୁଧାକୁ ।

ଅନ୍ୟ ଜଣେ ଭୃତ୍ୟା ଜମ୍ମା ଉମାକାନ୍ତକୁ ରଖି ରୁକ୍ମଣୀ ସହିତ ବାହାରିଲ ସେ । ଏ ସୁଯୋଗ ଛାଡ଼ିବାର ନୁହେଁ । ରତିକାନ୍ତ ତାର ବନ୍ଧୁ, ଇଆରମାନଙ୍କୁ ନେଇ କେଉଁଆଡେ ଯାଇଛି । କମଳୀବାଈ ଏକା ଅଛି ଗେଷ୍ଟହାଉସ୍‌ରେ । ରାଜବାଟୀର ବାହାରକୁ ଏକା ସେ କେବେ ଆସିନାହିଁ । ଅତିଥିଶାଳା କେଉଁଠି ସେ ଜାଣେନା । ଆଜ ଭାଗ୍ୟ ତାକୁ ନେଇ ଆସିଛି ଜୋର୍ କରି । ଯାନ ବାହାନରେ ନୁହେଁ, ଚୌଧୁରୀ ବଂଶର ବଧୂ ଆଜ ପଦବ୍ରଜରେ ଚାଲିଛି ତାର ଅନୁଗାମୀ ଭୃତ୍ୟା ସଙ୍ଗେ ସଙ୍ଗେ ।

ଲଜ୍ଜା, ମାନ, ଅଭିମାନ ସବୁ ଆଜ ଧୂଳିସାତ୍ ହୋଇଛି । କାହିଁକି ଭଗବାନ ତାକୁ ଏ ଶାସ୍ତି ଦେଲେ । ସିଏତ କାହାର ଅନିଷ୍ଟ କରିନାହିଁ--ତେବେ ଶାସ୍ତି କଣ ପାଇଁ ?

ଅତିଥିଭବନ ପାଖରେ ବୃଦ୍ଧ ସ୍ବାମୀ ଦରଓ୍ୱାନ ପହରା ଦେଉ-ଥାଏ । ବୋହୂରାଣୀକୁ ଦେଖି ଆଭୂମି ପ୍ରଣତ ହୋଇ କହିଲ— କ୍ୟା ବାତ୍ ମା'-ଜୀ ! ଆପ୍...

Digitized by srujanika@gmail.com

କମଲୀବାଈ ଘରେ ଅଛି ତ ?—ପଚାରିଲେ ରୁକ୍ମଣୀ ।

ହ୍ୟାଁ, ଲେକିନ୍...

ରାଣୀସାହେବା ତାଙ୍କ ସଙ୍ଗରେ ଦେଖା କରିବାକୁ ଚାହାନ୍ତି...

ଅନ୍ଦର ଯା'-ନା ହୁକୁମ ନେଇଁ ମା-ଜୀ...ବସୁଧା ଆଡ଼େ ଚାହିଁ କହିଲା ଦରଓ୍ୱାନ୍ ?

ତୁମର ବୋହୂରାଣୀ କାହାର ହୁକୁମ ମାନିବାକୁ ବାଧ୍ୟ ନୁହେଁ । ଯଦି ତୁମେ ବାଧା ଦିଅ, ଗୁମାସ୍ତା ଶଙ୍କରବାବୁଙ୍କ ପାଖରେ କୈଫିୟତ ଦେବାକୁ ପଡ଼ିବ । ତୁମର ଚାକିରି ଆଜି ହୁଏତ ଚାଲିଯାଇ ପାରେ । ରାସ୍ତା ଛାଡ଼ିବ କି ନା କୁହ...

ବୃଦ୍ଧ ଦରଓ୍ୱାନ୍ ରଘୁବୀର ସିଂ ମୁହୂର୍ତ୍ତେ କଣ ଚିନ୍ତା କଲା । ପରେ ଚିନ୍ତାନ୍ୱିତ କଣ୍ଠରେ କହିଲା...ଯାଇୟେ ମା-ଜୀ...

ଦୁହେଁ ଭିତରକୁ ଗଲେ । ରଘୁବୀର ସିଂ ମଧ୍ୟ ସେମାନଙ୍କର ପଛେ ପଛେ ଆସି କମଲୀବାଈର ଶୟନ କକ୍ଷ ଦେଖାଇ ଦେଇ ଫେରିଆସିଲା ନିଜ ସ୍ଥାନକୁ ।

ଦୁଆର ବନ୍ଦ ଥିଲା । ରୁକ୍ମଣୀ ଦରଜା ଉପରେ ମୃଦୁ କରାଘାତ କଲାରୁ ଭିତରୁ "କଏ" ବୋଲି ପ୍ରଶ୍ନ ଆସିଲା । ପର-ମୁହୂର୍ତ୍ତରେ ଦୁଆର ଖୋଲି ସେମାନଙ୍କର ସମ୍ମୁଖରେ ଛିଡ଼ା ହେଲା ଅପରୂପ ଲାବଣ୍ୟମୟୀ ଗୋଟିଏ ତରୁଣୀ ।

ବସୁଧା ଦେଖୁଥାଏ କମଲୀବାଈକୁ, କମଲୀବାଈ ମଧ୍ୟ ଏକ ଧ୍ୟାନରେ ଚାହିଁଥାଏ ବସୁଧାକୁ । ଅଭ୍ୟର୍ଥନା କରି ଭିତରକୁ ନେବା କଥା ମନେ ପଡେନା ତାର ।

ଦୁହିଁଙ୍କର ପଲକ ପଡ଼େନା, ଦୁହିଁଙ୍କ ଆଖିରେ ଜିଜ୍ଞାସାର ଚିହ୍ନ ।

Digitized by srujanika@gmail.com

କେତୋଟି ସ୍ତବ୍ଧ ମୁହୂର୍ତ୍ତ ଅତିବାହିତ ହେବାପରେ ପ୍ରଥମେ ବସୁଧା ପ୍ରଶ୍ନ କଲା—ତୁମେ କମଳାକାନ୍ତ ?—

ଗ୍ରୀବା ବଙ୍କେଇ ପରିଚୟ ସ୍ୱୀକାର କଲା କମଳାକାନ୍ତ ।

ମୋତେ ଚିହ୍ନି ପାରୁଛ ?···ଉତ୍ତପ୍ତ କଣ୍ଠରେ ପ୍ରଶ୍ନ କଲା ବସୁଧା ।

ନା—ଧୀର ଶାନ୍ତ କଣ୍ଠସ୍ୱର କମଳାକାନ୍ତର ।

ବସୁଧା ଗୃହିଣୀ ରୁକ୍ମିଣୀ ଆଡ଼େ । ଇଙ୍ଗିତ ବୁଝିପାରି ରୁକ୍ମିଣୀ କହିଲା—ଇଏ ହେଉଛନ୍ତି ଆମର ବୋଉ ରାଣୀ !—

କମଳା ହାତଯୋଡ଼ି ଅଭିବାଦନ ଜଣାଇଲା । ବସୁଧାର ମନେହେଲା ଏହା ସଭକ୍ତି ପ୍ରଣାମ ନୁହେଁ, ବଦ୍ରୂପର ତୀକ୍ଷ୍ଣ ଶର ।

ଭିତରକୁ ଆସ । ମୋର ଚରମ ସୌଭାଗ୍ୟ ଯେ ତୁମର ଗୋଡ଼ର ଧୂଳି—

"ଆପଣ" ନୁହେଁ "ତୁମେ" ଶୁଣି ବସୁଧାର ସର୍ବାଙ୍ଗ ରାଗରେ ଜଳିଗଲା । ସକ୍ରୋଧେ କହିଲା—ଇତର, ଶ୍ରେଷ୍ଠଲୋକ—ସମ୍ମାନ ଦେଇ କଥା କହି ଜାଣନା—

କିନ୍ତୁ କମଳା ବସୁଧାର କଥାରେ ରାଗିଲା ନାହିଁ । ଶାନ୍ତ କଣ୍ଠରେ କହିଲା—ମୋର ସମ୍ମାନ କିଛି ତୁମ ଅପେକ୍ଷା କମ୍ ନୁହେଁ, ବରଂ ବେଶୀ । ତାହା ନ ହୋଇଥିଲେ ତୁମେ କାହିଁକି ମୋ ଗୋଡ଼ ପାଖକୁ ଆସନ୍ତ ।

ତାର ଦୃର୍ଦ୍ଧା ଅତି ଅସହ୍ୟ ବୋଧହେଲା ବସୁଧାକୁ । କହିଲା—ମୋର ଅଇଁଠା ଖାଇ ମୋତେ ତେଜ ଦେଖାଇବାକୁ ବସିଛୁ ବାରବୁଲି କୁତି ।

Digitized by srujanika@gmail.com

ବାରବୁଲ କୁଣ୍ଡି ! ହାଃ-ହାଃ-ହାଃ···ହସିଲା କମଳୀ । ହସତ ନୁହେ, ସହସ୍ର ବୃଶ୍ଚିକର ନାହୁଡ଼ ଯେପରି ବସୁଧାର ଶରୀର ଭିତରେ ଫୋଡ଼ ହୋଇ ଯାଉଛି । ଅସହ୍ୟ ଜ୍ୱାଳାରେ ଅସ୍ଥିର ହୋଇ ପଡ଼ିଲା ସେ । କହିଲା—କଣ ତୁ ଚାହୁଁ ? ଅଳଙ୍କାର ?-- ଅର୍ଥ ?—କଣ ପାଇଲେ ତୁ ଏଠୁ ଯିବୁ ?

କିଛି ନୁହେଁ, କେବଳ ଜଣକୁ ଚାହେଁ ମୁଁ···ହସି ହସି କହିଲା କମଳୀ ।

ମାନେ, ରତିକାନ୍ତଙ୍କୁ ତୁ ଛାଡ଼ିବାକୁ ଚାହୁଁନା ! ତୁମ୍ଭେମାନେ ତ' ପ୍ରେମ କଣ ଜାଣନା, ଚିହ୍ନ କେବଳ ଅର୍ଥକୁ । କେତେ ଚାହୁଁ ? ଦଶ— ପନ୍ଦର--କୋଡ଼ିଏ ହଜାର ?—

ପୁଣି ବଜ୍ରପରି ହସ ହସିଲା କମଳୀ···

ତୋର ସେ ହସ ମୁଁ ଛଡ଼େଇ ଦେଉଛି । ଦି-ଘଣ୍ଟା ଭିତରେ ଯଦି ତୋର ଉତ୍ତର ନ ପାଏ, ଦେଖିବୁ ମୁଁ କଣ କରିପାରେ ।··· ଆ' ରୁକ୍ମିଣୀ—

ରୁକ୍ମିଣୀ ସହିତ ଫେରି ଆସିଲା ବସୁଧା । ପୁଣି କମଳୀ ବାଈର ହସ ସେମାନେ ଶୁଣିପାରିଲେ । ଥମକି ଛିଡ଼ା ହୋଇଗଲା ବସୁଧା । ତାର ମୁହଁ ଦେଖି ରୁକ୍ମିଣୀ ବୁଝି ପାରିଲା ବସୁଧା ନିଶ୍ଚୟ ଗୋଟାଏ କିଛି ଅଶୋଭନୀୟ କାଣ୍ଡ କରି ବସିବ । ତେଣୁ ତାକୁ ବୁଝାଇ କହିଲା—ଚାଲ ବୋହୂରାଣୀ, ତୁମେ ଯେତିକି କହିଛ ଯଥେଷ୍ଟ—ସେ ମଣିଷ ହୋଇଥିଲେ ବୁଝିବ । ଏତେଗୁଡ଼ାଏ ଲୋଭ ସେ ସମ୍ଭାଳି ପାରିବ ନାହିଁ । ସେ ତୁମ କଥାରେ ନିଶ୍ଚୟ ରାଜି ହେବ ଦେଖ···

ରୁକ୍ମିଣୀର କଥାରେ ଶାନ୍ତ ପଡ଼ିଲା ବସୁଧା । ସେଠାରୁ ସେମାନେ ବାହାରି ଆସିଲେ । କମଳୀବାଈର ହସର ଲହରୀ ସେ

Digitized by srujanika@gmail.com

ପର୍ଯ୍ୟନ୍ତ କାନ ପାଖରେ ଧ୍ୱନିତ ହେଉଥାଏ—ହାଃ-ହାଃ-ହାଃ, ହିଃ-ହିଃ-ହିଃ···

ଘରେ ଗୋଡ଼ ଦେଇ ବିସ୍ମିତ ହେଲା ବସୁଧା । ଶଙ୍କରବାବୁ ତାର ଅପେକ୍ଷାରେ ବସିଛନ୍ତି । ତାକୁ ଦେଖି କହିଲେ—କୁଆଡ଼େ ଯାଇଥିଲ ବୋହୂରାଣୀ, ମୁଁ ତୁମର ଅପେକ୍ଷାରେ ଅନେକ ବେଳୁ ବସିଛି । ଗୋଟାଏ ଜରୁରି ଖବର ନେଇ ଆସିଥିଲି ।

କଣ କହନ୍ତୁ···ଧୀର କଣ୍ଠରେ କହିଲା ବସୁଧା ।

ତୁମେ ଆଗେ ବସ ତ ମା' !···

ରୁକ୍ମିଣୀକୁ ପିବାକୁ କହି ସାମନା ଚେୟାରରେ ବସିଲା ବସୁଧା । ଶଙ୍କରବାବୁ ଗଳାଟାକୁ ପରିଷ୍କାର କରିନେଇ କହିଲେ—ତୁମେ ଏଥିରେ ହସ୍ତକ୍ଷେପ ନ କଲେ ଯାହା ଠିକିକ ଅଛି ସବୁ ନଷ୍ଟ ହୋଇଯିବ ମା' ! ରତିକାନ୍ତର ସମସ୍ତ ଖବର ତୁମେ ନିଶ୍ଚୟ ଶୁଣିଥିବ । ତା' ପରି ପିଲାର ଯେ ଏପରି ଅଧଃପତନ ହେବ ଏହା ମୁଁ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲି । ଯାହାହେଉ, ମୁଁ ଯେତେବେଳେ ତୁମର ଅନ୍ନରେ ପ୍ରତିପାଳିତ, ଶ୍ରେଷ୍ଠ ହୁଏ ଅଥବା ବଡ଼ ହୁଏ, ହିତାହିତ ପ୍ରତି ଦୃଷ୍ଟିଦେବା ଉଚିତ ବୋଲି ମନେ କରୁଛି—

ଆପଣ ଆଗେ ଆମ୍ଭମାନଙ୍କୁ କ୍ଷମା କରିବେ, କକା ! ରତିକାନ୍ତ ଆପଣଙ୍କ ପ୍ରତି କିପରି ବ୍ୟବହାର କରିଛି ମୁଁ ସେ ସମସ୍ତ ଶୁଣିଛି । ସେ ଆଜ ମଣିଷ ହୋଇ ନାହାନ୍ତି । ଆପଣଙ୍କର ବୋହୂରାଣୀ ଆଜ ଏତେଦିନ ପରେ ଗଳିଗଳି ଅତିଥିଶାଳା ପର୍ଯ୍ୟନ୍ତ ଯାଇଥିଲା ସଉତୁଣୀ ସାଙ୍ଗରେ କଳିଆ କରିବାକୁ ।—

Digitized by srujanika@gmail.com

ମା !...ଉଃ, ଏ କାହାର ଅଭିଶାପ ଜାଣେନା । ତୁମେ ତାଙ୍କୁ କଣ କହିଲ ମା' !—ଅର୍ଥର ଲୋଭ ଦେଖାଇଛ ବୋଧହୁଏ ? କିନ୍ତୁ—

ବସୁଧା ସମସ୍ତ ବିଷୟ କହିଗଲା । ଶଙ୍କରବାବୁ କେତୋଟି ମୁହୂର୍ତ୍ତ ଯାଏ ତଳକୁ ମୁହଁପୋତି କଣ ଚିନ୍ତା କଲେ । ତାପରେ କହିଲେ—ମୋର କିନ୍ତୁ ବିଶ୍ୱାସ ହୁଏନା ଏହି ସାମାନ୍ୟ ଅର୍ଥ ନେଇ ସେ ଏଠାରୁ ବିଦାୟ ହେବ । ତୁମେ ଶୁଣିଲେ ଆଶ୍ଚର୍ଯ୍ୟ ହେବ ମା'—ଜମିଦାରୀର ଦୁଇଟା ବଡ଼ ବଡ଼ ଗ୍ରାମ ଇତି ମଧ୍ୟରେ ବିକ୍ରୟ ହୋଇଗଲଣି, ଯେଉଁଥିରୁ ବାର୍ଷିକ ଲକ୍ଷେଟଙ୍କା ନିଟ୍ ଆମେ ପାଉଥିଲୁ । ଆଜ କେତୋଟି ଗ୍ରାମ ଏବଂ ଅତିଥିଶାଳାଟିର ବିକ୍ରୟର ବ୍ୟବସ୍ଥା କରିବା ଲାଗି ମୋ ଉପରେ ହୁକୁମ ଜାରି ହୋଇଛି । କିନ୍ତୁ ମା'—

କହୁ କହୁ ହଠାତ୍ କଥା ବନ୍ଦ କରିଦେଲେ ଶଙ୍କର ବାବୁ । ବସୁଧା କିଛିକ୍ଷଣ ଯାଏ ତାଙ୍କ ମୁହଁକୁ ଚାହିଁ କହିଲା—କହନ୍ତୁ, କକା !- -

ମାତ୍ର ତିନିବର୍ଷ ଭିତରେ ଯଦି ଲକ୍ଷ ଲକ୍ଷ ଟଙ୍କା ବରବାଦ୍ ହୁଏ, ଆମର ଆଉ ରହିଲା କଣ ମା' ! ମଦ, ନାରୀ ସବୁର ଅନର୍ଥର ମୂଳ । ଏ ନିଶା ପ୍ରଳୟଙ୍କରୀ ନିଶା । ମୋର ଆଶଙ୍କା ହେଉଛି, ତୁମେ ଓ ତୁମର ପିଲାଟିର ଭବିଷ୍ୟତ କଥା ଚିନ୍ତାକରି । ତେଣୁ, ତୁମେ ଯଦି ମୋତେ ସହାଯ୍ୟ କର, ବାକି ଯାହା ଟିକିକ ଅଛି ମୁଁ ସେତିକ ରକ୍ଷା କରିପାରେ ।

କହନ୍ତୁ, ମୁଁ ଆପଣଙ୍କର ଆଦେଶକୁ ତ' ଅମାନ୍ୟ କରି ପାରେନା ।...

Digitized by srujanika@gmail.com

ତେବେ ଶୁଣ ମା’ ! ମୁଁ ପ୍ରସ୍ତୁତ ହୋଇ ଆସିଛୁ ।···କହି ଶଙ୍କରବାବୁ ପକେଟରୁ ଖଣ୍ଡିଏ ଦରଖାସ୍ତ ବାହାର କରି ବସୁଧାର ହାତକୁ ବଢ଼ାଇ ଦେଉ ଦେଉ କହିଲେ—ତୁମେ ପଢ଼ ମା’ ! ଯଦି ଉଚିତ ମନେକର ସେଥିରେ ଦସ୍ତଖତ ଦିଅ । ସମ୍ପତ୍ତିଗତ କୋର୍ଟ ଅଫ୍ ୱାର୍ଡସ୍ କମ୍ପା ଟ୍ରଷ୍ଟି ସମ୍ପର୍କ ନ କରିଦେଲେ ଆଉ ରକ୍ଷା ନାହିଁ । ଉମାକାନ୍ତ ସାବାଳକ ହେବା ପର୍ଯ୍ୟନ୍ତ ଏହି ନିୟମ ବଳବତ୍ତର ଥାଉ । ତୁମେ ତାର ଅଭିଭାବକ ହୋଇ ଥିବ ! ମେନେଜିଂ ଟ୍ରଷ୍ଟି କିଏ ହେବ ତୁମେ ତାହା ମନୋନୀତ କରି କହିଲେ ମୁଁ ଏଥିରେ ଉଲ୍ଲେଖ କରିବ ।—

ବସୁଧା ଦରଖାସ୍ତଟିକୁ ପଢିଲା । ମନେ ମନେ ଖୁସି ହେଲା ସେ । ସ୍ୱାକ୍ଷର କରି କହିଲା—ମେନେଜିଂ ଟ୍ରଷ୍ଟି ଆପଣ ହେବେ ।···

ମୁଁ ! ନା-ମା’—ମୋତେ ତୁମେ ପୁଣି—

ପୂର୍ଣ୍ଣ ଦୃଷ୍ଟିରେ ଶଙ୍କରବାବୁଙ୍କ ଆଡ଼େ ଚାହିଁ ବସୁଧା କହିଲା—ମୋତେ ଆପଣଙ୍କର ନଜର ଝିଅ ବୋଲି ମନେ କରିବେ, କକା ; ଏ ଦୁର୍ଦ୍ଦିନରେ ଆପଣଙ୍କ ଛଡ଼ା ମୋର ଅନ୍ୟ ଭରସା କେହି ନାହାନ୍ତି । ଆପଣ ଏ’ ଦାୟିତ୍ୱ ନେଇ ଏହି ପରିବାରକୁ ରକ୍ଷା କରନ୍ତୁ—

ଆଚ୍ଛା ମା’—ତୁମ କଥା ରହିଲା···

ବସନ୍ତୁ, ମୁଁ ଆପଣଙ୍କ ପାଇଁ କଫି ନେଇଆସେ ।—

ନା, ମା’—ଥାଉ, ଓକିଲଙ୍କୁ ଡାକିଛି, ସେ ଏହିକ୍ଷଣି ଆସିଯିବେ । କଫି ମୁଁ ପରେ ଆସି ଖାଇବି···

Digitized by srujanika@gmail.com

ଶଙ୍କରବାବୁ ଗୁଲିଗଲେ । ବସୁଧାର ମନଟା ଅନେକ ପରିମାଣରେ ହାଲୁକା ହୋଇଗଲା । ସେ ଭିତରକୁ ଆସୁଥିଲା, ହଠାତ୍ ରବିକାନ୍ତ ପଛରୁ ଆସି କହିଲା—ଠିଆହୁଅ, ଆଗେ ମୋ କଥାର ଜବାବ୍ ଦେଇଯାଅ—

ଫେରି ଗୁହିଁଲା ବସୁଧା । ମୁହଁଟା କି ଭୟଙ୍କର ଦେଖାଯାଉଛି ରବିକାନ୍ତର । ହାତରେ ସେ କଣ ଧରିଛି ? ଗୁବୁକ୍ ! କାହିଁକି ?

ବସୁଧାକୁ ନୀରବ ରହିବା ଦେଖି ସେ ଗର୍ଜନ କରି କହିଲା—କାନକୁ କି ଶୁଭୁନାହିଁ ?

କଣ କହୁଛ ?—କ୍ଷୀଣ କଣ୍ଠରେ କହିଲା ବସୁଧା ।

ତୁମେ ଗେଷ୍ଟ ହାଉସ୍‌କୁ ଯାଇଥିଲ ?

ହଁ—

ଲଜ୍ଜା ହୁଏନା କହିବାକୁ ? ତୁମେ ନା ଘରର ବୋହୂ...
ତୁମେ କି ଆଉ ସେ ସମ୍ମାନ ମୋର ରଖିଛ ?—

ସଟ୍ ଅପ୍...ଗର୍ଜନ କରି ଉଠିଲା ରବିକାନ୍ତ ।...କମଳୀକୁ ତୁମେ କଣ କହିଛ ?—

ତୁମେ ତ ସବୁ ଶୁଣି ଆସିଛ, ପୁଣି ପଗ୍ଚରୁଛ କାହିଁକି ?...

ଖୁବ୍ ସାହସ ହୋଇଛି ତୁମର । ତାକୁ ଅର୍ଥଲୋଭ ଦେଖାଇଛ, କିନ୍ତୁ ଜାଣନା ସେ ଅର୍ଥ-ପିଶାଚିନୀ ନୁହେଁ । ସେ ପ୍ରେମିକା । ପ୍ରେମର ମୂଲ୍ୟ ସେ ବୁଝେ । ତୁମ ପରି ଶୁଷ୍କତରୁ ସେ ନୁହେଁ । ଟଙ୍କା ତୁମେ କେଉଁଠୁ ଆଣି ତାଙ୍କୁ ଦିଅନ୍ତ ? ବେଶ୍ୟାଗିରି କରି ?

ଉଡ଼ି ।—ବସୁଧାର ଧୈର୍ଯ୍ୟର ବନ୍ଧ ଯେପରି ଭାଙ୍ଗିଗଲା । ଚିତ୍କାର କରି କହିଲା, ତୁମେ ଏତେ ତଳକୁ ଖସିଯାଇଛ ? ନିଜର ଧର୍ମପତ୍ନୀ ପ୍ରତି ଏପରି କୁତ୍ସିତ ଇଙ୍ଗିତ କରିବାକୁ କିପରି ସାହସ ହେଲା ତୁମର । ଯାଅ, ଘରୁ ବାହାରି ଯାଅ । ଯିଏ ନିଜର ଧର୍ମ-ପତ୍ନୀକୁ ବିନା ଅପରାଧରେ ଦୁଃଖ କଷ୍ଟ ଦେଇ ତା' ଉପରେ ପୁଣି ଅପମାନ କରେ, ସେ ସ୍ୱାମୀ ନୁହେଁ, ଶତ୍ରୁ—

ଶତ୍ରୁ ! ବେଶ୍ ତେବେ--ଶତ୍ରୁତା ଆରମ୍ଭ ହେଉ...

କହୁ କହୁ ଚାବୁକ୍‌ଟାକୁ ଉଠାଇ ସପାଂ କରି ବସୁଧାର ପିଠିରେ ବସାଇଲା । ମା'-ଲୋ ବୋଲି ଚିତ୍କାର କରି ତଳେ ପଡ଼ିଗଲା ବସୁଧା ! ଅନ୍ୟ ପାହାର ପାଇଁ ଚାବୁକ୍ ଉଠାଇବା ବେଳେ ହଠାତ୍ ରୁକ୍ମଣୀ ପହଞ୍ଚି ଚାବୁକ୍‌ଟାକୁ ଛଡ଼ାଇ ନେଇ କହିଲା —ଏ କ'ଣ କରୁଛ, ସାଆନ୍ତେ...ରତିକାନ୍ତ କ୍ରୋଧାନ୍ଧ ଦୃଷ୍ଟିରେ ରୁକ୍ମଣୀ ଓ ବସୁଧା ଆଡ଼େ ଚାହିଁ ଘରୁ ବାହାରି ଗଲା ।



ରୁକ୍ମଣୀ ଆସି ଖବର ଦେଲା କିଏ ଜଣେ ଭଦ୍ରମହିଳା ବସୁଧାକୁ ଡାକୁଛନ୍ତି ବୋଲି । ବସୁଧା ବାହାରକୁ ଆସି ଦେଖେତ ଶମିତା ଦୁଆର ମୁହଁରେ ଛିଡ଼ା ହୋଇଛି । କୋଳରେ ଦୁଇବର୍ଷର ଶିଶୁଟି ।

ଶମି, ତୁ ଆସିଛୁ ! ଆ' ଭିତରକୁ । ଏ କିଏ ଜାଣୁ ? ମୋର ସାନ୍ ଭଉଣୀ ଇଏ ।—

Digitized by srujanika@gmail.com

ବାବା ! ତୁମର ଦେହ କି ଭଲନାହିଁ । ଏ କ'ଣ ରୂପ ହୋଇଛି ତୁମର ! ଭଉଣୀ ଘରେ ଅଛନ୍ତି ତ ? ପୁଅ ତୋର—

ପଢ଼ିବାକୁ ଯାଇଛି । ଚାଲତ' ଭିତରକୁ ।

ଶମିତା ଆସିଲା ଭିତରକୁ । ଦୁଇ ଭଉଣୀ ଦୁଃଖ ସୁଖ ହେଲେ । କିନ୍ତୁ ବସୁଧା ରତିକାନ୍ତର କୌଣସି କଥା କହିଲାନି । ଜମିଦାରୀର ବହୁତ ଦୂରକୁ ଯାଇଛି ବୋଲି ଭୁଲାଇ ଦେଇଥାଏ ।

ଶମିତାର ଏଠାକୁ ଆସିବାର ସାତଦିନ ହୋଇଗଲା । ସବୁଦିନେ ସେ ରତିକାନ୍ତ କଥା ପଚାରେ । କେତେ ଆଉ ତାକୁ ଭୁଲାଇ ରଖା ଯାଇପାରେ । ମନେ ମନେ ପ୍ରମାଦ ଗଣେ ସେ । ନିଜକୁ ଯଥାସମ୍ଭବ ଶମିତା ପାଖରୁ ଅଲଗା ରଖିବାକୁ ଚେଷ୍ଟା କରେ । ଅବଶ୍ୟ ବସୁଧା ମନେ ମନେ ଭଗବାନଙ୍କୁ ଡାକେ, ରତିକାନ୍ତ ଯେପରି ଶମିତା ଥିବା ସମୟ ଭିତରେ ନ ଆସେ ।

ଅଦ୍ଭୁତ ଅଭିନୟ କରୁଥାଏ ବସୁଧା, ସେ ଯେପରି ଜଣେ ସୁଦକ୍ଷା ଅଭିନେତ୍ରୀ । ବେଳେ ବେଳେ ତାର ମନେହୁଏ ଶମିତା ତାକୁ ଆଉ ସନ୍ଦେହ କରୁନାହିଁ ତ ? ଶମିତା ଯେତେବେଳେ ଉମାକାନ୍ତକୁ ନେଇ ଅଲଗା ଜାଗାକୁ ଯାଏ ମନେ ମନେ ବସୁଧାର ମନରେ ଆଶଙ୍କା ଉପୁଜେ । କାଳେ ଉମାକାନ୍ତ ରତିକାନ୍ତ ବିଷୟରେ କିଛି କହି ପକାଏ । ସେ'ତ ବାପ-ମା'ଙ୍କର କଳହ ଲାଗିବାର ଅନେକ ଥର ଶୁଣିଛି ।

ଦିନେ ରାତିରେ ଉମାକାନ୍ତକୁ ପାଖରେ ନେଇ ବସୁଧା ଶୋଇଛି, ଟିକିଏ ଛଡ଼ାରେ ଶମିତା ଅନ୍ୟ ଏକ ପଲଙ୍କରେ ପୁଅକୁ ନେଇ ଶୋଇଥାଏ —ରାତି ସେତେବେଳେ କେତେ ହେବ କେଜାଣି କି ଗୋଟାଏ ଶବ୍ଦ ଶୁଣି ନିଦଟା ତାର ଭାଙ୍ଗିଗଲା । ଅ ସାବଧାନରେ ଆଖି ଖୋଲି ଦୁଆର ଆଡ଼େ ଚାହିଁ ଦେଖେ ଶମିତା ଧୀରେ ଧୀରେ ଦୁଆରଟିକୁ ଆଉଜି ବାହାରକୁ ଯାଉଛି

Digitized by srujanika@gmail.com

ସେ ମଧ୍ୟ ଅତି ସନ୍ତର୍ପଣରେ ପଲଙ୍କରୁ ଓହ୍ଲାଇ ଧୀରେ ଧୀରେ ଦୁଆର ମୁହଁ ପାଖକୁ ଆସି ଅତି ସାବଧାନରେ ଦୁଆରଟାକୁ ଖୋଲି ବାହାରକୁ ଗୁହିଁ ଦେଖିଲା’ ସବୁଆଡ଼େ ଅନ୍ଧାର । ଏଣେ ତେଣେ ଗୁହୁଁ ଗୁହୁଁ କାହାର କଣ୍ଠସ୍ୱର ଶୁଣି ଚମକ ପଡ଼ି ସେ ଗୋଟିଏ ଖମ୍ବର ଆଡ଼ୁଆଳରେ ଲୁଚିଗଲା । ଏଥର ସେ ପରିଚିତ କଣ୍ଠସ୍ୱର ଶୁଣି ଚହ୍ନିପାରିଲା ରୁକ୍ମଣୀକୁ, କିନ୍ତୁ ସେମାନେ ଏତେ ନିମ୍ନ ସ୍ୱରରେ କଥାବାର୍ତ୍ତା ହେଉଥିଲେ ଯେ, କିଛି ଏ ହେଲେ ବୁଝି ପାରିଲା ନାହିଁ ବସୁଧା । ତାର ମନେହେଲା, ଶର୍ମିଳା ନିଶ୍ଚୟ କିଛି ଜାଣି ପାରିଛି ଏବଂ ଆଜି ଟିକିଏ ପରିଷ୍କାର ହେବାପାଇଁ ରୁକ୍ମଣୀର ସାହାଯ୍ୟ ନେଇଛି । ରୁକ୍ମଣୀର ଭାବ-ଭଙ୍ଗୀ ଦେଖି ସେ ଅନୁମାନ କରି ପାରିଲା ଶର୍ମିଳାର ଆଉ କିଛି ଅଜ୍ଞାତ ନାହିଁ ।

ଆଚ୍ଛା, ତୁମେ ଯାଅ···

ଶର୍ମିଳାର କଣ୍ଠସ୍ୱର । ଟିକିଏ ଖସ୍ ଖସ୍ ଶବ୍ଦ, ରୁକ୍ମଣୀ ବୋଧହୁଏ ଗୁଲିଗଲା । ବାହାରି ଶୟନ କକ୍ଷ ଆଡ଼କୁ ଆସୁଥିଲା ପୁଣି କାହାର କଣ୍ଠସ୍ୱର ଶୁଣି ଥମକି ଠିଆ ହୋଇଗଲା ।

ଶର୍ମି—

କିଣ ହେଲା ?—

ସବୁ ଠିକ୍ ଅଛି···ଭାଇ ବୋଧହୁଏ ପଅରଦିନ ଆସି ପହଞ୍ଚିବେ ।

ତାର କ’ଣ ହେଲା ?—

ତାକୁ ପୁଲିସ ଆରେଷ୍ଟ କରିଛି ।···

ଆଉ କିଛି ଶୁଣିବାର ଧୈର୍ଯ୍ୟ ରହିଲା ନାହିଁ ବସୁଧାର । “ଆରେଷ୍ଟ” ଶୁଣି ମୁଣ୍ଡ ତାର ଘୂରିବାକୁ ଲାଗିଛି । କିପରି ଭାବେ ସେ ଶୟନ କକ୍ଷକୁ ଫେରି ଆସିଛି, କେତେବେଳେ ତାକୁ ଲାଗିଯାଇଛି ସେ ଜାଣି ପାରିନାହିଁ ।

Digitized by srujanika@gmail.com

ନିଦ ଭାଙ୍ଗିବା ପରେ ଦେଖେ ତ' ଶମିତା ଘରେ ନାହିଁ । ବାଥ୍‌ରୁମ୍ ଆଡ଼େ ଯାଇଥିବ ମନେକରି ଅପେକ୍ଷା କଲି, ମାତ୍ର ଯେତେବେଳେ ଦେଖିଲି ଯେ ଶମିତାର ବେଡ଼୍ଂ ଡ୍ରଇଙ୍ଗ ଘରେ ନାହିଁ—ସେତେବେଳେ ସେ ଚିତ୍କାର କରି ଡାକିଲା ରୁକ୍ମଣୀକୁ !

ରୁକ୍ମଣୀ ଆସିଲା । ହସି ହସି କହିଲା—ଏତେ ଘନଆ ଡାକ ପଡ଼ୁଛି କାହିଁକି ? ପୁଅ ପାଇଁ ଦୁଧ ଗରମ କରୁଥିଲି , ଟିକିଏ ଥଣ୍ଡା ହୋଇଯାଉ, ଆଣିବି—

ମୁଁ ସେ କଥା ପଚାରୁ ନାହିଁ, ଶମିତା କୁଆଡ଼େ ଗଲା କହ···ବସୁଧାର କଣ୍ଠସ୍ୱର ରୁକ୍ଷ ।

ମୁଁ କେମିତି ଜାଣିବି ? ଏକା ଘରେ ଶୋଇଥିଲ, ତମେ ଜାଣିଲ ନାହିଁ—ମୋତେ ପଚାରୁଛ ?—

ଚାଲକି ରଖି ଦେ । ମନେ କରୁଛୁ ମୁଁ କିଛି ଜାଣେନା । କାଲି ରାତିରେ କାହା ସାଙ୍ଗରେ କଥାବାର୍ତ୍ତା ହେଉଥିଲୁ ? ଶମିତା, ରୁ— ଆଉ ସେ ଲୋକଟା କିଏ କହ'ତ !

ମୁଁ ଜାଣେନା···କହି ଚାଲି ଯାଉଥିଲା । ବସୁଧା ତାକୁ ବାଧା ଦେବାକୁ ଚେଷ୍ଟା କରୁଥିଲା, ଠିକ୍ ଏତିକି ବେଳେ ବାହାରୁ ଡାକ ଶୁଭିଲା—ବୋହୂ ମା' ! ପୁଅକୁ ନେଇ ଏଣେ ଆସତ' ।

ବସୁଧା ବାହାରକୁ ଆସି ସୌମ୍ୟକାନ୍ତି ସୁଶ୍ରୀ ବଳିଷ୍ଠ ଦୀର୍ଘ-କାୟ ଏକ ପୁରୁଷଙ୍କୁ ଠିଆ ହୋଇଥିବା ଦେଖି ଚିହ୍ନି ନ ପାରି ପଚାରିଲା—ଆପଣ···

ଚିହ୍ନି ପାରିଲ ନାହିଁ, ବୋହୂ ମା'—ତୁମେ ନ ଚିହ୍ନ, ନ ମୋର ନଷ୍ଟପୁ ଚିହ୍ନିବ ।

Digitized by srujanika@gmail.com

ବସୁଧାର ଲୁଗା କାନି ଧରି ଉମାକାନ୍ତ ପଛଆଡ଼କୁ ଟାଣିବାରୁ ସେ ତାକୁ ଦେଖିପାରି ଆଗନ୍ତୁକ ଆଡ଼େ ଗୃହିଁଲା । ଆଗନ୍ତୁକ ହାତ ଠାରି ତାକୁ ଡାକିବା ମାତ୍ରେ ସେ ପାଖକୁ ଆସିଲାରୁ ପକେଟରୁ ଗୋଟିଏ ସୁନା ହାର ବାହାରି କରି ଉମାକାନ୍ତର ଗଳାରେ ପିନ୍ଧାଇ ଦେଇ ଅନ୍ୟ ପକେଟରୁ ସୁଦୃଶ୍ୟ କାରୁକାର୍ଯ୍ୟପୂର୍ଣ୍ଣ ଗୋଟିଏ ସିନ୍ଦୂର ଫରୁଆ ବାହାର କରି ବସୁଧାର ହାତକୁ ବଢ଼ାଇ ଦେଇ ଦେଇ କହିଲେ—ତରତରରେ ଅନ୍ୟ କିଛି ଆଣି ପାରିଲି ନାହିଁ— ପୁଣି କେବେ ଏଣିକି ଆସିଲେ—

ଉପହାରଟିକୁ ମୁଣ୍ଡରେ ଛୁଆଇଁ ଆଗନ୍ତୁକକୁ ପ୍ରଣାମ କରି ବସୁଧା କହିଲା—ଆପଣ ବସନ୍ତୁ, ମୁଁ ଏଇ ସାଙ୍ଗେ ସାଙ୍ଗେ ଆସୁଛି ।—

ବାଧା ଦେଇ ଆଗନ୍ତୁକ କହିଲେ—ମୋର ଅଭ୍ୟର୍ଥନା ପରେ କରିବ ମା'—ଆଗେ ମୋର ପରିଚୟଟା ନିଅ । ମୁଁ ତୁମର ଭଉଣୀ ଶମିତାର ଶ୍ୱଶୁର, ମୋର ନାମ ଶୋଭନ ରାୟ ।

ଆପଣ—ଆପଣ··· କହି ପଦଧୂଳି ନେଇ ବସୁଧା କହିଲା— କିନ୍ତୁ ଆପଣଙ୍କର ବୋହୂ—

ଜାଣେ, କାଲି ରାତିରେ ମଦନ ତାକୁ ନେଇ ଗ୍ୱଲି ଯାଇଛି···

ମଦନ ବାବୁ ଆସିଥିଲେ !—ଗତ ରାତିର ସେହି ଦୃଶ୍ୟଟି ମନେ ପଡ଼ିଲା ବସୁଧାର । ରୁକ୍ମଣୀ, ଶମିତା ଓ ସେହି ପୁରୁଷ । ମୁଣ୍ଡ ତାର ଗୋଳମାଳ ହୋଇ ଆସିଲା ।

ଏହି ସମୟରେ ଶଙ୍କର ବାବୁ ଆସି ପହଞ୍ଚି ଶୋଭନବାବୁଙ୍କୁ ଦେଖି ବିସ୍ମିତ ହୋଇ କହିଲେ—ଆପଣ ଆସିଛନ୍ତି ?

ଆପଣ ବି ତାଙ୍କୁ ଚିହ୍ନନ୍ତି କିକା ।—

Digitized by srujanika@gmail.com

ଶବ୍ଦେ ନୁହେଁ ତ କଣ ! ଯେଉଁ ଦୁଇଖଣ୍ଡ ଗାଁ ଆମର ବନ୍ଧି ହୋଇଛି, ଶୋଭନ ବାବୁ ତାହା କଣି ନେଇଛନ୍ତି ।

ତାହାହେଲେ ଆପଣ ନିଶ୍ଚୟ ମୋର ଦୁରବସ୍ଥା କଥା ଜାଣି-ଛନ୍ତି ବାବା ! ଆଗେ ସେ ଏପରି ନ ଥିଲେ, କାହା ବୁଦ୍ଧିରେ ପଡ଼ି ସେ ଏପରି ସେ ହୋଇଛନ୍ତି—

ଶୋଭନ ବାବୁ ହସି ହସି କହିଲେ – ଯେତେବେଳେ ବିଜ୍ଞାପନରେ ଦେଖିଲି ତୁମର ମହାଲ ଦୁଇଟି ବିକ୍ରୟ ହେବାର କଥା, ମୋ ମନରେ ସନ୍ଦେହ ହୋଇଥିଲା । ତୁମର ଶ୍ୱଶୁରଙ୍କୁ ତ’ ମୁଁ ଚିହ୍ନେ । ତାଙ୍କର ମୃତ୍ୟୁ ସମ୍ବାଦ ମଧ୍ୟ ପାଇଛି । ମନେ କରିଥିଲି ରାଜାସାହେବ ବୋଧହୁଏ ଅନେକ ଟଙ୍କାଏ ଧାର କରି ଯାଇଛନ୍ତି । ସେ ଟଙ୍କାର ପରିଶୋଧ ପାଇଁ ମହାଲ ବିକ୍ରି କରିବାକୁ ହେଉଛି । କଣିବା ପରେ ମୋର ବୋହୂ—ମା’ ତାହା ଶୁଣି କପରି ସନ୍ଦେହ ପ୍ରକାଶ କଲା । ମାତ୍ର କିଛିଦିନ ତଳେ ଏଠାକାର ଜଣେ ଲୋକ ପାଖରୁ ପ୍ରକୃତ ଘଟଣା ଜାଣିପାରି ମୁଁ ପୁଲିସର ସାହାଯ୍ୟ ନେଇ-ଥିଲି । ମୋର ଜଣେ ବନ୍ଧୁ ପୁଲିସ ଅଫିସର ସନ୍ଧାନ ନେଇ ନେଇ ହଠାତ୍ ରତିକାନ୍ତ ସାଙ୍ଗରେ ଜଣେ ଖୁଣୀ ଆସାମୀକୁ ଦେଖି ସନ୍ଧାନ ନେଇ ଜାଣି ପାରିଲେ, କମଳାବାଈର ସେ ଲୋକଟି ହେଉଛି ସେକ୍ରେଟେରୀ । ତିନିଦିନ ତଳେ, ସେମାନଙ୍କୁ ଆରେଷ୍ଟ କରାଯାଇଛି । ରତିକାନ୍ତ ମଧ୍ୟ ସେମାନଙ୍କ ସାଙ୍ଗରେ ଯାଇଥିଲା, ଆଜ ବୋଧହୁଏ ପୁଲିସ ଆଣି ତାକୁ ଘରେ ଛାଡ଼ି ଦେଇ ଯିବ…

ବାବା ! ଆପଣ, ଆପଣ ମୋର ଯେଉଁ ଉପକାର କରିଛନ୍ତି ସେ ଋଣ ମୁଁ ଶୁଝି ପାରିବି ନାହିଁ । କକା (ଶଙ୍କରବାବୁଙ୍କୁ ଦେଖାଇ) ଆପଣ ନ ଥିଲେ ମୋର ସେ କି ଅବସ୍ଥା ହୁଅନ୍ତା । ଶଟି

Digitized by srujanika@gmail.com

ଆସିଲ, ମଦନ ବାବୁ ଆସିଲେ, ଏ ସମ୍ବନ୍ଧରେ କେହି ଟିକିଏ କିଛି ହେଲେ ମୋତେ କହିଲେ ନାହିଁ।···ବସୁଧା ଆଖିରୁ ଲୁହ ଗଡ଼ି ପଡ଼ୁଥାଏ।

ଏହି ସମୟରେ "ବସୁ—ବସୁ" ବୋଲି ଡାକୁ ଡାକୁ ଘର ଭିତରକୁ ପଶି ଆସିଲା ରତିକାନ୍ତ।···ବସୁ, ମୁଁ ଆସିଛି—ତୁମେ ମୋତେ କ୍ଷମା କରିବତ' ! ···ହଠାତ୍ ଶୋଭନ ବାବୁଙ୍କୁ ଦେଖି କପରି ଅପ୍ରସ୍ତୁତ ହୋଇ ଗୁହିଁଲାରୁ ବସୁଧା କହିଲା—ଆଗେ ତାଙ୍କୁ ଓ କକାଙ୍କୁ ପ୍ରଣାମ କରିସାର।—

ବସୁଧାର ଆଦେଶଟା ଅମାନ୍ୟ କରି ପାରିଲାନି ରତିକାନ୍ତ।

ଶୋଭନ ବାବୁ ପକେଟରୁ ବଡ଼ାଏ କାଗଜ ପତ୍ର ବାହାର କରି କହିଲେ—ଜମି ବାଡ଼ିର କାଗଜ ପତ୍ର ଗୁଡ଼ାକ ନିଅ ବୋହୂ ମା' ! ସେ ଜମିରେ ମୋର କିଛି ଅଧିକାର ନାହିଁ । ତୁମ୍ଭମାନଙ୍କର ବିବାହରେ କୌଣସି ଉପହାର ଦେଇ ପାରି ନାହିଁ । କବଲାଗୁଡ଼ିକ ଦେଇ ମୁଁ ଆଶୀର୍ବାଦ କରୁଛି ତୁମେମାନେ ସୁଖୀ ହୁଅ । ସ୍ତ୍ରୀ-କୁ କେବେ ଅବହେଳା କରନା ରତିକାନ୍ତ—ସବୁବେଳେ ମନେରଖ ସ୍ତ୍ରୀ ହେଉଛି **ଜୀବନ ସଙ୍ଗିନୀ**···

ଉଭୟେ ପୁଣି ଶୋଭନ ବାବୁ ଓ ଶଙ୍କର ବାବୁଙ୍କୁ ପ୍ରଣାମ କଲେ ।



---

ମୁଦ୍ରାକର- ଶ୍ରୀଧନେଶ୍ୱର ସାହୁ
ସୂର୍ଯ୍ୟୋଦୟ ପ୍ରେସ୍, କଟକ

Digitized by srujanika@gmail.com

